# ଅଜଣା ଦେଶର ଅଜବ କଥା

ଲେଖକ :

ଶ୍ରୀ ଜଗନ୍ନାଥ ମିଶ୍ର



**ଅଜଣା ଦେଶର ଅଜବ କଥା**

ଲେଖକ :

**ଶ୍ରୀ ଜଗନ୍ନାଥ ମିଶ୍ର**

ଟିକଧର

ଅରୁଣୋଦୟନଗର,

କଟକ-୧୨

ପ୍ରକାଶକ :

**ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ**

ବିନୋଦବିହାରୀ

କଟକ-୨

ନୂତନ ସଂସ୍କରଣ :

**୧୯୯୫**

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ୍**

ତେଲେଙ୍ଗାବଜାର, କଟକ-୨

ମୂଲ୍ୟ—**ପନ୍ଦର ଟଙ୍କା**

# ନୂତନ ସଂସ୍କରଣର ଭୂମିକା

କେତେବର୍ଷ ତଳେ ମୁଁ ସେକେଣ୍ଡାରି ବୋର୍ଡ଼ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲାବେଳେ ସୁପରିଚିତ ଶିଶୁସାହିତ୍ୟିକ ଶ୍ରୀ ରାମପ୍ରସାଦ ମହାନ୍ତିଙ୍କ ପ୍ରେରଣାରେ ଶ୍ରେଷ୍ଠ ପିଲାଙ୍କ ପାଇଁ କେତୋଟି କୌତୁକିଆ ଗଳ୍ପ ଲେଖିଥିଲି ଓ ସେଗୁଡ଼ିକ ତାଙ୍କର 'ମୋ ଦେଶ' ମାସିକ ପତ୍ରିକାରେ ସ୍ଥାନ ପାଇଥିଲା । ଗଳ୍ପଗୁଡ଼ିକ ଆଦୃତ ହୋଇଥିବାରୁ କେତେକ ବନ୍ଧୁଙ୍କ ଅନୁରୋଧରେ ମୁଁ ସେଥିରୁ ବାରଟି ଏକାଠି କରି 'ଅଜଣା ଦେଶର ଅଜବ କଥା' ନାମରେ ପୁସ୍ତକଟିଏ ପ୍ରକାଶ କରିଥିଲି । ପୁସ୍ତକର ଦ୍ୱିତୀୟ ସଂସ୍କରଣ ପରେ ଏହାର ପୁନଃମୁଦ୍ରଣ ପାଇଁ ମୁଁ ଧ୍ୟାନ ଦେଇପାରି ନଥିଲି ।

ଏବେ କଟକର ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ ଉକ୍ତ ପୁସ୍ତକଟିର ନୂତନ ସଂସ୍କରଣଟିଏ ପ୍ରକାଶ କରିବାକୁ ଆଗ୍ରହାନ୍ୱିତ ହେବାରୁ ମୁଁ ସେଥିରେ ଆଉ ତିନୋଟି ଗଳ୍ପ ଯୋଗ କରିଛି । ପ୍ରକାଶକଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ବିଭିନ୍ନ କଥାକାରଙ୍କ ଲେଖାରୁ ଗୃହୀତ ମୂଳ ବିଷୟବସ୍ତୁକୁ ମୁଁ ନିଜର କଳ୍ପନା ଅନୁସାରେ ନୂତନ ରୂପ ଦେଇ ପିଲାଙ୍କର ହୃଦୟଗ୍ରାହୀ କରିବାକୁ ଚେଷ୍ଟା କରିଛି । ସେମାନେ ଅଘଟନ କଥା ଘଟିବାର କାହାଣୀ ଶୁଣିବାକୁ ଭଲପାଆନ୍ତି । ଏପରି କାହାଣୀକୁ ବର୍ଣ୍ଣନା ଚତୁରୀରେ ସରସ ଓ ହାସ୍ୟୋଦ୍ଦୀପକ କରାଯାଇପାରେ । ଏ କାହାଣୀଗୁଡ଼ିକ କିଞ୍ଚିତ୍ ପରିମାଣରେ ସେହି ଲକ୍ଷ୍ୟ ପୂରଣ କରିପାରିଲେ ମୋର ଏହି ସାମାନ୍ୟ ପ୍ରୟାସ ସଫଳ ହୋଇଛି ବୋଲି ମନେକରିବି ।

**ଲେଖକ**

# ସୂଚୀ





# ଅଜଣା ଦେଶର ଅଜବ କଥା



କଥାଟିଏ କହୁଛି । କେଉଁ ଦେଶର କଥା ବା କେଉଁ କାଳର କଥା ମତେ ଜଣାନାହିଁ ।

ଦିନେ ଗୋଟିଏ ପିଲା ହାତରେ ମୁଣିଏ ଗହମ ଧରି ଗହମପେଷା କଳକୁ ଗଲା । ଦେଖିଲା କଳମାଲିକ ଆସି ଅଧାବୁଢ଼ା ହେଲାଣି, ହେଲେ ତା'ର ଗୋଟିଏ ହେଲେ ଦାଢ଼ି କଅଁଳନି । ପିଲାଟା ସାନ ହେଲେ କ'ଣ ହେବ, ଭାରି ବୁଦ୍ଧିଆ । ସେ ଜାଣିଥିଲା, ଯେଉଁ ଲୋକର ଦାଢ଼ି କଅଁଳେ ନାହିଁ, ତାକୁ ବିଶ୍ୱାସ କରିବା କଥା ନୁହେଁ । ଭାବିଲା ଫେରିଯିବ । ହେଲେ ଗତି କ'ଣ ? ଗହମ ପେଷା ନହେଲେ ରୁଟି ହେବ କେମିତି ? ଖାଇବାକୁ

କିଛି ନାହିଁ । ବାଧ୍ୟ ହୋଇ କଳମାଲିକକୁ ଗହମଟକ ଦେଲା । ମାଲିକ
ଗହମ ପେଷିସାରି କହିଲା, "ପୁଅ, ତୁ କ'ଣ ରୁଟିକରି ଜାଣିବୁ ? ମୁଁ
ତୋ'ପାଇଁ ବଢ଼ିଆ ରୁଟି କରିଦେବି, ଏମିତି ରୁଟି କେବେ ଖାଇନଥିବୁ ।"
ପିଲଟା ଆଗ ରାଜି ହେଲାନି, ପରେ କଳମାଲିକର କଅଁଳ କଥାରେ
ଭୁଲିଗଲା ।

ରୁଟି ତିଆରି କରିସାରି କଳମାଲିକ କହିଲା, "ଦେଖ ପୁଅ, ମୋ'
ପରିଶ୍ରମ ପାଇଁ ତୁ ମତେ ରୁଟିରୁ ଅଧେ ଦେବାର କଥା । ମାତ୍ର ମୁଁ
ଗୋଟିଏ କଥା କହିବି—ଆମ ଦୁହିଁଙ୍କ ଭିତରୁ ଯିଏ ଅଜବ କଥାଟିଏ
କହିବାରେ ଜିଣିପାରିବ, ସବୁଯାକ ରୁଟି ତା'ର ହେବ ।" ପିଲାଟି ମନେ
ମନେ ଭାବିଲା, ମାଲିକ କଥାରେ ରାଜି ନହେଲେ ବିପଦ । ଦେଖାଯାଉ ।
ସେ ହଁ ଭରିଲା । କଳମାଲିକର ଆଗ ପାଳି ପଡ଼ିଲା । ସେ କହିଲା—

ଗୋଟିଏ ଦେଶରେ ଜଣେ ରଜା ଥିଲେ । ସେ ଜୀବନରେ ଥରେ
ହେଲେ ମିଛ କହି ନଥିଲେ । ଜଣେ ବୁଢ଼ୀ ଥିଲା, ସେ ଥରେ ହେଲେ
ପାଟି ଫିଟାଇ କିଛି କହି ନଥିଲା । ଜଣେ ପୁରୁଷଲୋକ ଥିଲା, ସେ
କେବେହେଲେ ଅବିଶ୍ୱାସ କାମ କରି ନଥିଲା ।

କଳମାଲିକ ଜାଣିଥିଲା, ସବୁ ରଜା ମିଛୁଆ, ସବୁ ସ୍ତ୍ରୀ ଗପୁଡ଼ି,
ଆଉ ସବୁ ପୁରୁଷ ଅବିଶ୍ୱାସୀ ।

ତା'ପରେ ପିଲାର ପାଳି ପଡ଼ିଲା । ସେ କହିଲା—ଏଥର ମୋ'
କଥା ଶୁଣ ।

ପିଲାଦିନେ ଯେତେବେଳେ ମୋ' ବୟସ ବେଶି ଥିଲା, ଆମେ
ସୁନ୍ଦର ବଗିଚାଟିଏ କରିଥିଲୁ । ଆମ ବଗିଚାରେ ବହୁତ ମହୁଫେଣା ଥିଲା ।
ସବୁଦିନ ସକାଳେ ମୁଁ ମହୁମାଛି ଗଣୁଥିଲି । ମୁଁ ଅତି ସହଜରେ ମହୁମାଛି-
ଗୁଡାକ ଗଣିପାରୁଥିଲି, ମାତ୍ର ମହୁଫେଣା ଗଣିବା ମୋ ପକ୍ଷରେ କାଠିକର
ପାଠ । ଦିନେ ମହୁମାଛି ଗଣୁ ଗଣୁ ଦେଖିଲି, ଆମର ସବୁଠାରୁ ଭଲ
ମହୁମାଛିଟି ନାହିଁ । ସେଇଠୁ ମୁଁ କ'ଣ କଲି ନା ଗୋଟିଏ କୁକୁଡ଼ା

ପିଠିରେ କନ୍ଥାଏ ଭିଡ଼ି ତା'ଉପରେ ବସିପଡ଼ିଲି, ଆଉ ମହୁମାଛି ଖୋଜିବାକୁ ବାହାରିଲି । ମହୁମାଛିର ବାଟଉଣ୍ଡି ମୁଁ ସମୁଦ୍ରକୂଳରେ ପହଞ୍ଚିଲି । ଆଉ ତେଣିକି ବାଟ ମିଳିଲାନି । ମୁଁ ଜାଣିପାରିଲି ମହୁମାଛିଟା ସମୁଦ୍ର ପାରି ହୋଇ କେଉଁଆଡ଼େ ଚାଲିଯାଇଛି ।

ମୁଁ କୁକୁଡ଼ା ଉପରେ ବସି ଏକ ଚାଟ ମାରି ତାକୁ ସମୁଦ୍ର ଉପରେ ଉଡ଼ାଇଦେଲି । ଆର ପାରିରେ ପହଞ୍ଚି ଦେଖିଲି ଜଣେ ଚଷା ମୋ' ମହୁମାଛିକୁ ହଳରେ ଯୋଚି ଚାଷ କରୁଛି, ମାଣ୍ଡିଆ ବୁଣିବ । ମୋ' ଦେହ ଗରମ ହୋଇଗଲା । ମୁଁ ତା' ପାଖକୁ ଯାଇ କହିଲି, "ତୁ ମୋ' ମହୁମାଛିକୁ ନେଇ ଚାଷରେ ଲଗାଇଛୁ, ନା ? ଏକା ଚଟକଣାରେ ତୋ' ମୁଣ୍ଡ ଉଡ଼ାଇ ଦେବି, ଜାଣିଛୁ ?" ମୋ' ରାଗ ଦେଖି ଚଷାର ପିଳେହି ପାଣି ହୋଇଗଲା । ସେ କଅଁଳେଇ କଅଁଳେଇ କହିଲା, "ଭାଇ, ରାଗ କରନା । ଏଇଟା ଯେବେ ତୋ' ମହୁମାଛି, ନେଇଯା, ମୁଁ ଜୋର୍ କରୁନି ।" ଚଷା ମୋ' ମହୁମାଛିକୁ ମତେ ଫେରାଇ ଦେଲା । ଆଉ ତାକୁ କାମରେ ଲଗାଇଥିବାରୁ ମତେ ଅଖାଏ ମାଣ୍ଡିଆ ଦେଲା ।

ମୁଁ ମହା ଆନନ୍ଦରେ ମାଣ୍ଡିଆ ଅଖାଟିକୁ କାନ୍ଧରେ ପକାଇଲି । ସଙ୍ଗେ ସଙ୍ଗେ କୁକୁଡ଼ା ପିଠିରୁ କନ୍ଥା ଖୋଲିଦେଇ ମହୁମାଛି ପିଠିରେ ଲଗାଇଦେଲି । କୁକୁଡ଼ାଟା ହାଲିଆ ହୋଇଯାଇଥିଲା । ତାକୁ ବିଶ୍ରାମ ଦେବାପାଇଁ ମହୁମାଛି ପଛରେ ବାନ୍ଧିଦେଲି । ମହୁମାଛି ପିଠିରେ ବସି ସମୁଦ୍ର ପାରି ହେଉଛି ହଠାତ୍ ମାଣ୍ଡିଆ ଅଖା ମୁହଁରେ ବନ୍ଧା ହୋଇଥିବା ଦଉଡ଼ିଟି ଛିଣ୍ଡିଗଲା । ସଙ୍ଗେ ସଙ୍ଗେ ମାଣ୍ଡିଆତକ ସମୁଦ୍ର ଭିତରେ ଅଜାଡ଼ିହୋଇ ପଡ଼ିଲା । କ'ଣ କରିବି ? ସମୁଦ୍ର ପାରି ହୋଇସାରି ମୁଁ ମହୁମାଛିକୁ ଘାସ ଚରିବାକୁ କୂଳରେ ଛାଡ଼ିଦେଲି, ଆଉ କୁକୁଡ଼ାଟାକୁ ପୁଳାଏ କୁଟା ଦେଇ ନିଜେ ଟିକିଏ ଶୋଇପଡ଼ିଲି ।

ସକାଳୁ ନିଦରୁ ଉଠି ଦେଖିଲିବେଳକୁ ଗଧିଆଗୁଡ଼ାକ ମୋ ମହୁମାଛିଟାକୁ ମାରି ଖାଇ ଦେଇଛନ୍ତି ଆଉ ତା' ପେଟରୁ ମହୁଗୁଡ଼ାକ ଚାରିଆଡ଼େ ବୋହିଯାଇ ପାହାଡ଼ ଉପରେ ଆଣ୍ଠୁଏ ଉଚ୍ଚରେ ଜମା

ହୋଇଯାଇଛି । ଏତେ ମଧୁ କେଉଁ ପାତ୍ରରେ ପୂରାଇବ ? ଶେଷରେ ଟାଙ୍ଗିଆଟା ଧରି ମୁଁ ଜଙ୍ଗଲକୁ ଗଲିଗଲି । ଜଙ୍ଗଲରେ ଦେଖିଲି, ଦୁଇଟା ହରିଣ ଗୋଟିଏ ଗୋଡରେ ଡେଇଁ ଡେଇଁ ବୁଲୁଛନ୍ତି । ମୁଁ ସେମାନଙ୍କ ଉପରକୁ ଟାଙ୍ଗିଆଟା ଫୋପାଡ଼ି ଦେଲି । ଟାଙ୍ଗିଆ ଚୋଟରେ ସେ ଦୁଇଟାର ଗୋଡ଼ ଭାଙ୍ଗିଗଲା । ହରିଣ ଦୁଇଟା ମାରି ମୁଁ ସେମାନଙ୍କ ଛାଲରେ ଦୁଇଟା ବସ୍ତା ତିଆରି କଲି । ଫେରିଆସି ମଧୁତକ ବସ୍ତା ଦୁଇଟିରେ ଭର୍ତ୍ତିକରି ବସ୍ତା ବନ୍ଦ କରିଦେଲି । ସେ ବସ୍ତା ଦୁଇଟି କୁକୁଡ଼ା ପିଠିରେ ଲଦି ମୁଁ ଘରଆଡ଼କୁ ଗଲିଲି ।

ଘରକୁ ଆସି ଦେଖିଲି ଠିକ୍ ସେତିକିବେଳକୁ ମୋ' ବାପା ଜନ୍ମ ହୋଇ କୁଆଁ କୁଆଁ କାନ୍ଦୁଛନ୍ତି । ଶିବଙ୍କ ଜଟାରୁ ପବିତ୍ର ଗଙ୍ଗା ପାଣି ଆଣି ବାପାଙ୍କୁ ଗାଧୋଇ ଦେବାକୁ ଲୋକେ ମୋତେ କହିଲେ ।

କ'ଣ କରିବି ? କେମିତି ସ୍ୱର୍ଗକୁ ଯିବି ? ସମୁଦ୍ର କୂଳକୁ ଯାଇ ଦେଖିଲି, ମୋ' ମାଣ୍ଡିଆ ଅଖାରୁ ଗଳିପଡ଼ିଥିବା ମାଣ୍ଡିଆଗୁଡ଼ିକରୁ ଗଜା ବାହାରି ପ୍ରକାଣ୍ଡ ଗଛମାନ ହୋଇଯାଇଛି । ଗଛଗୁଡ଼ାକ ଏତେ ବଡ଼ ହୋଇଯାଇଛି ଯେ, ସେଗୁଡ଼ାକର ଅଗ ଦେଖାଯାଉନି ।

ସାହସ କରି ଗୋଟାଏ ଗଛରେ ଚଢ଼ି ଚଢ଼ି ସ୍ୱର୍ଗରେ ଯାଇ ପହଞ୍ଚିଗଲି । ସେଇଠି ଦେଖିଲି ମାଣ୍ଡିଆ କେଣ୍ଡାଗୁଡ଼ାକ ପାଚିଯାଇଛି । ଇନ୍ଦ୍ରଦେବତା ସେଥିରୁ କିଛି ଅମଳ କରି ସେଥିରେ ଗୋଟାଏ ବଡ଼ ଚକୁଳିପିଠା କରି ଖାଉଛନ୍ତି । ମୋତେ ଦେଖି ସେ ଠିଆ ହୋଇପଡ଼ି 'ସାଲ୍ୟୁଟ୍' କଲେ । ମୁଁ ମଧ୍ୟ 'ସାଲ୍ୟୁଟ୍' ମାରିବାର କାଇଦା ଆମ ସ୍କୁଲରୁ ଶିଖିଥିଲି । ସଙ୍ଗେ ସଙ୍ଗେ ଓଲଟା ସାଲ୍ୟୁଟ୍‌ଟାଏ ମାରିଦେଲି । ଚକୁଳିଖିଆ ଇନ୍ଦ୍ରଦେବତା ମୋ' ଉପରେ ଭାରି ଖୁସିହୋଇ ମତେ ଚକୁଳି ଖଣ୍ଡେ ବଢ଼ାଇଦେଲେ । ଭୋକରେ ମୋ' ପେଟ ଜଳୁଥିଲା । ମୁଁ ସ୍ୱର୍ଗର ଚକୁଳିପିଠା ଖଣ୍ଡକ ଆଖିପିଛୁଳାକେ ଶେଷ କରିଦେଲି ।

ଚକୁଳି ଖାଇସାରି ମୁଁ ଇନ୍ଦ୍ରଦେବତାଙ୍କୁ ମୋ' ଦୁଃଖ ଜଣାଇଲି । ସେ ଶିବଙ୍କ ଜଟାରେ ଚଢ଼ି ମୋ ପାଇଁ ଢାଳେ ଗଙ୍ଗାପାଣି ଆଣିଦେଲେ । ମୋ' ଆନନ୍ଦ ଦେଖେ କିଏ

ସ୍ୱର୍ଗରୁ ଓହ୍ଲାଇବାକୁ ମାଣ୍ଡିଆ ଗଛ ଖୋଜିଲି, ମାତ୍ର ମାଣ୍ଡିଆ ଗଛ ଆଉ କାହିଁ ? ଏହା ଭିତରେ କେତେବେଳେ ଝଡ଼ବର୍ଷାରେ ସମୁଦ୍ରରେ ବଢ଼ି ହୋଇ ମାଣ୍ଡିଆ ଗଛଗୁଡ଼ାକ ଭାସିଯାଇଥିଲା ।

ଏବେ କରେ କ'ଣ ? ମୋର ମନେପଡ଼ିଲା, ମୋ'ର ଖୁବ୍ ଲମ୍ବାବାଳ ଅଛି । ଅଣ୍ଟାରୁ ଛୁରୀ ବାହାରକରି ଗୋଟି ଗୋଟି କରି ସବୁ ବାଳ କାଟି ଅଗକୁ ଅଗ ଗଣ୍ଠି ପକାଇଲି । ସେଇ ବାଳକୁ ଧରି ମୁଁ ତଳକୁ ଖସିଲି । ଅଧବାଟରେ ରାତି ହୋଇଗଲା । ମତେ ଭାରି ନିଦ ମାଡ଼ିଲା । ମୁଁ ବାଳରେ ଗୋଟାଏ ବଡ଼ ଫାଶ ପକାଇ ତା' ଭିତରେ ନିଜକୁ ବାନ୍ଧିପକାଇଲି ଓ ସେମିତି ଓହଳକରି ଶୋଇପଡ଼ିଲି । ମାତ୍ର ଶୀତରେ ମୋ ଦେହ ଠକ୍ଠକ୍ ହୋଇ ଥରିଲା । ନିଦ ଭାଙ୍ଗିଗଲା ।

ମୋର ମନେପଡ଼ିଲା, ଚୂରୁଟ୍ ଲଗାଇବା ପାଇଁ ମୋ' ଅଣ୍ଟାରେ ଗୋଟିଏ ଡିଆସିଲି ଅଛି । ଗୋଟିଏ ଚୁଙ୍ଗି ମଧ୍ୟ ମୋ' ପାଖରେ ଥାଏ । ମୁଁ ଡିଆସିଲିକାଠି ମାରି ଚୁଙ୍ଗିଟାକୁ ତତାଇଦେଲି । ବେଶ୍ ଜୁଷୁମ୍ ହେଲା । ମାତ୍ର ଏ କ'ଣ ? କେମିତି କେଜାଣି ଜଳନ୍ତା ଚୁଙ୍ଗିଟା ବାଳ ଦେହରେ ଲାଗିଯିବାରୁ ବାଳଟା ଗୋଟିଏ ସ୍ଥାନରେ ପୋଡ଼ିଗଲା । ମୁଁ ଧୁମ୍କରି ପୃଥିବୀ ଉପରେ କଚୁଡ଼ ହୋଇ ପଡ଼ିଲି ।

ଯେଉଁଠି ପଡ଼ିଲି ସେଠି ମାଟିଟା ଏତେ ଗମ୍ଭୀର ହୋଇଗଲା ଯେ, ମୁଁ ମାଟିରେ ପୋତି ହୋଇଗଲି । ସେଇଠୁ କ'ଣ କଲି ନା ଘରକୁ ଦୌଡ଼ିଯାଇ ମୋ' ବାରହାତିଆ କୋଡ଼ଟାକୁ ନେଇଆସିଲି । କୋଡ଼ରେ ମାଟି ଆଡ଼େଇ ଆଡ଼େଇ ପାହାଚ କରିପକାଇଲି । ପାହାଚଗୁଡ଼ାକରେ ଚଢ଼ି ଚଢ଼ି ଶେଷରେ ମୁଁ ଭୂଇଁ ଉପରକୁ ଉଠିଲି ।

ଭୂଇଁ ଉପରେ ଠିଆହୋଇ ଦେଖିଲି ବିଲବାଡ଼ରେ କାମ କରୁଥିବା ଲୋକଗୁଡ଼ାକ ପ୍ରଚଣ୍ଡ ଖରାରେ ଛଟପଟ ହେଉଛନ୍ତି । ମୁଁ ପାଟିକରି ସେମାନଙ୍କୁ କହିଲି, "ହେ-ହେ ଶୁଣ । ଆମ ଘରେ ଦୁଇ ମାଇଲ୍ ଲମ୍ବା ଏକ ମାଇଲ୍ ଚୌଡ଼ା ଘୋଡ଼ାଟିଏ ଅଛି । ତା' ପିଠିରେ ଗଛପତ୍ରର ଜଙ୍ଗଲ ହୋଇଯାଇଛି । ତୁମେମାନେ ମୋ' ବାପାଙ୍କୁ କହି

ଘୋଡ଼ାଟି ନେଇଆସିଲେ ତା'ର ଶୀତଳ ଛାଇରେ ମହା ଆନନ୍ଦରେ କାମ କରିପାରିବ ।" ସେମାନେ ସେଇକଥା କଲେ । ବାପାଙ୍କୁ କହିବାରୁ ବାପା ଘୋଡ଼ାଟିକୁ ଆଣି ବିଲରେ ଛାଡ଼ିଦେଲେ ।

ଘୋଡ଼ା ଛାଇରେ କାମ କରୁ କରୁ ଶୋଷରେ ସମସ୍ତେ ଛଟପଟ ହେଲେ । ମୁଁ ଗୋଟାଏ ବଡ଼ ମାଠିଆ ଧରି କୂଅମୂଳକୁ ଦୌଡ଼ିଲି । ଦେଖିଲି ବେଳକୁ କୂଅପାଣି ବରଫ ପାଲଟି ଯାଇଛି । ମୁଁ କ'ଣ କଲି ନା ମୋ ମୁଣ୍ଡଟାକୁ କାନ୍ଧରୁ ହୁଗୁଳାଇ ପକାଇଲି । ମୁଣ୍ଡଟା ଧରି ବରଫକୁ ପିଟି ପିଟି ଚୂନା କରିଦେଲି । ବରଫଗୁଣ୍ଡରେ ମାଠିଆ ଭର୍ତ୍ତିକରି ମାଠିଆ ଧରି ଆସି ଶୋଷିଲା ଲୋକଗୁଡ଼ାକୁ ଥଣ୍ଡା ପାଣି ଦେଲି ।

ଲୋକଗୁଡ଼ାକ ପାଣି ପିଇସାରି ମୋ' ଆଡ଼କୁ ଆଖି ତରାଟି ଚାହିଁ କହିଲେ, "ବାବୁ, ତୁମର ମୁଣ୍ଡଟା କାହିଁ ?" ମୁଁ ହାତ ଟେକିଲି । ଆରେ, ସତେ ତ ମୋ ମୁଣ୍ଡ କୁଆଡ଼େ ଗଲା ?

ମୋର ମନେପଡ଼ିଲା କୂଅମୂଳେ ମୁଣ୍ଡଟାକୁ ଛାଡ଼ି ଆସିଛି । ମୁଣ୍ଡଟା ପାଇଁ ମୁଁ କୂଅ ଆଡ଼କୁ ଦୌଡ଼ିଲି । ବାଟରେ ଜଣେ ଲୋକକୁ ଭେଟିଲି । ସେ ଲୋକର ଜମା ଗୋଡ଼ ନାହିଁ । ଲୋକଟା ଗୋଟେ ହାତରେ ତା'ର ଜୋତାଟିଏ ଧରି, ଆର ହାତରେ ତାକୁ ପାଲିସ୍ କରୁଛି । ମତେ ଦେଖି ବିକଳ ହୋଇ ସେ ପଇସାଟିଏ ମାଗିଲା । ମୁଁ ଅଣ୍ଟିରୁ ଟଙ୍କାଟିଏ ବାହାର କରି ତା' ଆଡ଼କୁ ଫୋପାଡ଼ି ଦେଲି । ଖୁସିଟାଏ ହୋଇ ସେ କହିଲା, "ବାବୁ, ତୁମର ଦୟାପାଇଁ ମୁଁ ତୁମକୁ ଗୋଟିଏ ନୂଆକଥା ଶିଖାଇ ଦେଉଛି—ଶୁଣ, ସବୁ ପାଣି ଓଦା ।" ଏ ନୂଆକଥା ମୁଁ ଆଗରୁ ଶୁଣି ନଥିଲି । ଏ କଥା ଶୁଣି ମୋ' ମନରେ ଭୟହେଲା । ମୁଁ ଥରି ଥରି କୂଅମୂଳକୁ ଗଲି । ସେଠାକୁ ଯାଇ ଦେଖିଲି ଗୋଟାଏ ବିଲୁଆ ମୋ' ଆଗରୁ ସେଇଠି ପହଞ୍ଚି ମୋ' ମୁଣ୍ଡଟାକୁ କାମୁଡ଼ୁଛି । ମୁଁ ଗୋଡ଼ ଚପି ଚପି ତା' ପାଖରେ ପହଞ୍ଚି ତାକୁ ଏପରି ଏକ ଲାତ ମାରିଲି ଯେ, ସେ ମାଡ଼ରେ ବିଲୁଆ ତା' ଦେହରୁ ଗୋଟାଏ କ'ଣ ଖସାଇ ପକାଇଲା । ଦେଖିଲିବେଳକୁ ସେଇଟା ଗୋଟାଏ ବହି । ବହିଟା

ମେଲାଇ ଦେଖିଲା ସେଥିରେ ବଡ଼ ବଡ଼ ଅକ୍ଷରରେ ଲେଖାଅଛି, "ସବୁଯାକ ଛୁଟି ତୁମର ।"

ପିଲାଟିଠାରୁ ଏ ଅଜବ କାହାଣୀ ଶୁଣି କଳମାଲିକ ବୋକା ବନିଗଲା । ସଙ୍ଗେ ସଙ୍ଗେ ସେ ସବୁଯାକ ଛୁଟି ପିଲାଟି ହାତକୁ ବଢ଼ାଇଦେଲା । ପିଲାଟି ମହାଖୁସିରେ ଘରକୁ ଫେରିଲା ।



# ଚତୁରୀର ବାହାଘର



ଗୋଟିଏ ଗାଁରେ ଜଣେ ବୁଢ଼ା ଥାଏ । ତା' ଘରେ ତିନି ପ୍ରାଣୀ । ସେ, ତା' ସ୍ତ୍ରୀ ଆଉ ଗୋଟିଏ ଝିଅ । ବାପ ମା' ଗେଲବସରରେ ଝିଅର ନାଁ ରଖିଥିଲେ 'ଚତୁରୀ' । ଚତୁରୀ ରୂପରେ ଅପ୍‌ସରୀ ପରି । ହେଲେ କ'ଣ ହେବ ବୁଦ୍ଧି ବୋଲି ତା' ମୁଣ୍ଡରେ କାଣିଚାଏ ନଥାଏ । ବୁଦ୍ଧି ନଥିଲେ ରୂପକୁ ପଚାରେ କିଏ ? ଦେଖୁ ଦେଖୁ ଅଳିଅଳି ଝିଅ ଚତୁରୀର ବାହା ବୟସ ଗଡ଼ିଗଲା । ଜଣେ ହେଲେ ପାତ୍ର ମିଳିଲେନି । ବାପା ମା'ଙ୍କର ଭାଳେଣି ପଡ଼ିଲା—ଝିଅଟା ଏତେ ବଡ଼ ହୋଇଗଲାଣି, ତାକୁ କେମିତି ବାହା ଦେବେ । ଦିନେ କ'ଣ ହେଲା ନା କୁଆଡ଼ୁ ଜଣେ ବିଦେଶୀ ଆସି ତାଙ୍କ ଘରେ ପହଞ୍ଚିଲା । ଝିଅଟିର ରୂପ ଦେଖି ସେ ତାକୁ

ବାହା ହେବାକୁ ମନ ବଳାଇଲା । ବାପା ମା'ଙ୍କର ଆନନ୍ଦ ଦେଖେ କିଏ ? ସେମାନଙ୍କ ଗୋଡ଼ ତଳେ ପଡ଼ୁ ନଥାଏ । ଏତେଦିନକେ ସେମାନଙ୍କ ଭାଗ୍ୟ ଖୋଲିଛି । ଅତିଥିଙ୍କ ପାଇଁ ସଙ୍ଗେ ସଙ୍ଗେ ରନ୍ଧାବଢ଼ା ଆରମ୍ଭ ହୋଇଗଲା । ମା' ତା ଝିଅକୁ କଅଁଳେଇ କରି କହିଲା, "ଗଲୁ ଝିଅ, ଗମ୍ଭୀର ଘର ତେଲ ପିମ୍ପାରୁ ଗିନାଏ ତେଲ ଆଣିବୁ । ମୁଁ ମାଛ କାଟି ରଖିଛି, ଦି'ଗୁରିଖଣ୍ଡ ଭାଜିଦେବ ।"

ଚତୁରୀ ବଡ଼ ତେଲଗିନାଟି ଧରି ଗମ୍ଭୀର ଘର ଭିତରେ ପଶିଲା । ପିମ୍ପାଟା ଅଣାଇଦେଇ ତେଲ ନଗାଡ଼ୁଛି, କାହିଁକି କେଜାଣି ଉପରକୁ ଚାହିଁଦେଲା । ଦେଖିଲା ବେଳକୁ ଓଳି ଉପରେ ଟାଙ୍ଗିଆଟାଏ ଝୁଲୁଛି । କେଉଁ କାଳରୁ କିଏ ଟାଙ୍ଗିଆଟା ସେଠି ଓହଳାଇ ଦେଇଛି । କଳଙ୍କି ଲାଗି ସେଇଟା ମାଟିଆ ଦିଶିଲାଣି । ଟାଙ୍ଗିଆଟା ମୁଣ୍ଡ ଉପରେ ଦେଖି ଚତୁରୀ ଭାବିଲା, "ମୁଁ ଯଦି ଏ ବିଦେଶୀକୁ ବାହାହୁଏ, ଆଉ ମୋର ଗୋଟିଏ ପୁଅ ହୁଏ, ତେବେ ସେ ପୁଅଟି ଦିନେ ନା ଦିନେ ଏ ଘର ଭିତରେ ପଶିବ । ସେତିକିବେଳକୁ ଏ ଟାଙ୍ଗିଆଟା ଯେବେ ତା' ମୁଣ୍ଡ ଉପରେ ଖସିପଡ଼େ, ମୁଁ କରିବି କ'ଣ ? ମା'ଲୋ, ମୋ ପୁଅର ମୁଣ୍ଡ ତ ଦୁଇଫାଳ ହୋଇଯିବ ।"

ଚତୁରୀର ବୁକୁତଳୁ କୋହ ଉଠିଲା । ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । ଏଣେ ତେଲଗିନାଟା ଭର୍ତ୍ତି ହୋଇ ଘରଯାକ ତେଲ ବୋହିଗଲାଣି । ତାକୁ ମୋଟେ ଜଣାପଡ଼ୁନି ।

ଝିଅର ବିଳମ୍ବ ଦେଖି ମା' ଆସି ଗମ୍ଭୀର ଘରେ ପଶିଲା । ଦେଖିଲାବେଳକୁ ଘରଯାକ ତେଲ, ଝିଅ ବସି କାନ୍ଦୁଛି । ମା' ଛନିଆ ହୋଇ ପଚାରିଲା, "କିଲୋ, ହେଲା କ'ଣ ? କାହିଁକି ଇମିତି କାନ୍ଦୁଛୁ ?"

ଝିଅ ଆହୁରି ଜୋର୍‌ରେ କାନ୍ଦିଉଠିଲା । ଥେଙ୍ଗେଇ ଥେଙ୍ଗେଇ ମା'କୁ କହିଲା, "ମା'ଲୋ, ତୁ ତ ଏ ବିଦେଶୀକୁ ଜ୍ୱାଇଁ କରିବୁ । ମୋର ପୁଅଟିଏ ହେଲେ ସେ ପୁଅ କେଉଁଦିନ ନିଶ୍ଚେ ଏ ଘରେ ପଶିବ । ଏ ଟାଙ୍ଗିଆଟା ଯେବେ ତା' ମୁଣ୍ଡ ଉପରେ ଖସିପଡ଼େ ତା'ର ଦଶା କ'ଣ ହେବ କହିଲୁ ?

ମୁଁ କ'ଣ କରିବ ? କୁଆଡ଼େ ଯିବ ମା' ?" ଝିଅର କଥା ଶୁଣି ମା'ର ମଧ୍ୟ କୋହ ଉଠିଲା । ମା' ଝିଅ ଦୁହେଁ କୁଣ୍ଢାକୁଣ୍ଢି ହୋଇ ବୋବାଳି ଛାଡ଼ିଲେ । ସେମାନଙ୍କ ପାଟି ଶୁଣି ବାପା ମଧ୍ୟ ଦୌଡ଼ିଆସିଲା । ସେ ମା'ଠାରୁ ସବୁ କଥା ଶୁଣି ଥୟଧରି ପାରିଲାନାହିଁ । ସେ ମଧ୍ୟ ମା' ଝିଅ ସଙ୍ଗେ ସ୍ୱର ମିଳାଇଦେଲା । ତିନିଜଣଯାକର କାନ୍ଦଣା ଶୁଣି ବିଦେଶୀ ମଧ୍ୟ ଧାଇଁଆସିଲା । ଏ ଦୃଶ୍ୟ ଦେଖି ସେ ଛାନିଆ ହୋଇଗଲା । ତାକୁ ଦେଖି ତିନିହେଁ ଆହୁରି ବିକଳ ସ୍ୱରରେ କାନ୍ଦିଉଠିଲେ । ବାପା ଆଖିରୁ ଲୁହ ପୋଛୁ ପୋଛୁ କହିଲା, "ବାବୁ ମୋ ଝିଅକୁ ତୁମେ ବାହାହେଲେ ତୁମର ପ୍ରଥମ ପୁଅଟି ଯେବେ ଏ ଘର ଭିତରେ ପଶେ ଆଉ ଏ ଟାଙ୍ଗିଆଟା ତା' ମୁଣ୍ଡରେ ଖସିପଡ଼େ, ଆମେ କ'ଣ କରିବା କହିଲ ? ଆମେ କ'ଣ ଏ ସଂସାରରେ ଆଉ ଜୀବନଧରି ରହିପାରିବା ?"

ଏ ଅଜବ କଥା ଶୁଣି, ଆଉ ଏ ତିନିଜଣଙ୍କର ଏପରି ବିଚିତ୍ର ଅଭିନୟ ଦେଖି ବିଦେଶୀ ହସି ହସି ବେଦମ୍ ହୋଇଗଲା । ଏମିତି ମୂର୍ଖ ପୁଣି ଦୁନିଆରେ ଅଛନ୍ତି !

ବିଦେଶୀ କବାଟ ଉପରେ ଚଢ଼ି ଟାଙ୍ଗିଆଟା ତଳକୁ ଖସାଇ ପକାଇଲା । ଆଉ ସେମାନଙ୍କୁ କହିଲା—"ମୁଁ ତୁମ ଘରୁ ବାହାରିଯାଉଛି । ତୁମଠୁ ଆହୁରି ବଡ଼ ମୂର୍ଖ ତିନିଜଣ କେଉଁଠି ଦେଖିଲେ, ଫେରିଆସି ଏ ଝିଅକୁ ବାହାହେବି ।"

ସେ ଚାଲିଗଲା, ମାତ୍ର ଏମାନଙ୍କ କାନ୍ଦ ବନ୍ଦ ହେଲା ନାହିଁ । ବିଦେଶୀ ଯାଉ ଯାଉ ବାଟରେ ଗୋଟିଏ ବଣ ପଡ଼ିଲା । ବଣ ଭିତରେ ଗୋଟିଏ ଜାଗାରେ ଦେଖିଲା ଜଣେ ଲୋକ ତା' ଘୁଷୁରିଟାକୁ ପଛଆଡ଼ୁ ପିଟୁଛି, ମାତ୍ର ଘୁଷୁରିଟା ଜମା ଆଗକୁ ଯାଉନାହିଁ । ତା' ଆଗରେ ଗୋଟାଏ ବରଗଛ ମହୁଲ ଗଛ ।

ବିଦେଶୀ ସେ ଲୋକଟାକୁ କହିଲା, "ଆରେ ଆରେ, ଏ କ'ଣ କରୁଛ, ଘୁଷୁରିଟାକୁ ଏମିତି ପିଟୁଛ କାହିଁକି ?" ଲୋକଟା ଉତ୍ତର ଦେଲା, "ବାବୁ, ଦେଖନ୍ତୁ ଏ ଗଛରେ କେତେ ମହୁଲ ଅଛି । ଏ ପାଜି ଘୁଷୁରିଟା

ଯେବେ ଗଛରେ ଚଢ଼ିଯାଆନ୍ତା ପେଟେ ମହୁଲ ଖାଇପାରନ୍ତା । ହେଲେ ଏଇଟା କ'ଣ ଚଳୁଛୁ ? ପିଠି ପିଠି ମୋ ହାତ ବଥାଇଗଲାଣି ।"

ବିଦେଶୀ ହୋ-ହୋ ହୋଇ ହସିଉଠିଲା । କହିଲା, "କହୋ, ତମେ ନିପଟ ମୂର୍ଖ ନା କଅଣ ? ନିଜେ ଗଛରେ ଚଢ଼ି ମହୁଲ ଝଡ଼ାଇ ଦେଉନ ? ଘୁଷୁରିଟା କିପରି ଗଛରେ ଚଢ଼ିବ ?"

ଲୋକଟା ତା' ଭୁଲ୍ ବୁଝିପାରି କହିଲା, "ସତେତ ! ମୋର ଏ କଥା ଜମା ମନେ ନଥିଲା ।" ବିଦେଶୀ ମନେ ମନେ ଭାବିଲା, ଏ ତ ସେ ତିନିଟାଠାରୁ ଆହୁରି ବଡ଼ ମୂର୍ଖ ।

ବଣରୁ ବାହାରି ବିଦେଶୀ କିଛିବାଟ ଗଲାପରେ ଗୋଟିଏ ବଡ଼ ଗାଁରେ ପହଞ୍ଚିଲା । ସେତେବେଳକୁ ସଞ୍ଜ ହୋଇ ଆସୁଥାଏ । ସେ ଗାଁରେ ଗୋଟିଏ ଛୋଟ ଧର୍ମଶାଳା ଥାଏ । ବିଦେଶୀ ରାତିକଲାଗି ସେଇଠି ରହିଲା ।

ସକାଳୁ ଉଠି ସେ ଦେଖିଲା ଧର୍ମଶାଳାରେ ଆଶ୍ରୟ ନେଇଥିବା ଆଉ ଜଣେ ଲୋକ ତା' ପୋଷାକ ପିନ୍ଧୁଛି । ସେ ଆଗ ତା' କାମିଜ୍‌ଟା ଦେହରେ ଗଳାଇ ପକାଇଛି ଆଉ କାନ୍ଥରେ ଥିବା ଦୁଇଟି କଣ୍ଟାରେ ତା' ପ୍ୟାଣ୍ଟ ଝୁଲାଇ ଦେଇ ତା' ଭିତରେ ଗୋଡ଼ ପୂରାଇବାକୁ କୁଦା ମାରୁଛି । ହେଲେ ତା' ପ୍ୟାଣ୍ଟ ଭିତରେ ଥରେ ବି ଗୋଡ଼ ଦୁଇଟା ଗଳିପାରୁନାହିଁ । କେତେବେଳେ ଏପାଖକୁ, କେତେବେଳେ ସେପାଖକୁ ପଡ଼ିଯାଉଛି । ବିଚରା ଡେଇଁ ଡେଇଁ ଝାଳନାଳ ହୋଇଗଲାଣି ।

ଏ ଦୃଶ୍ୟ ଦେଖି ବିଦେଶୀ ହସି ହସି ନାକେଦମ୍ । ଲୋକଟି ପାଖକୁ ଯାଇ କହିଲା, "ଏ କ'ଣ, ପ୍ୟାଣ୍ଟଟା କାନ୍ଥରେ ଝୁଲାଇଦେଇ ଏମିତି ଘୋଡ଼ା ପରି କୁଦା ମାରୁଛ କାହିଁକି ?"

ଲୋକଟି ଧଇଁସଇଁ ହୋଇ ଉତ୍ତର ଦେଲା, "ଆଜ୍ଞା, ପ୍ୟାଣ୍ଟ ଗୋଟିଏ ଚମତ୍କାର ଉଦ୍ଭାବନ । ପ୍ୟାଣ୍ଟ ପିନ୍ଧିପାରିଲେ ଖୁବ ଆରାମରେ ଯିବାଆସିବା କରିହୁଏ, ମାତ୍ର ଏଇଟା ପିନ୍ଧିବାକୁ ହେଲେ ଖୁବମତ

କମ୍ପରତ୍ କରିବାକୁ ପଡ଼େ । ଏଥିପାଇଁ ପ୍ରତିଦିନ ମୋତେ ଘଣ୍ଟେ ଦୁଇଘଣ୍ଟା ଏମିତି ପରିଶ୍ରମ କରିବାକୁ ହୁଏ । ଆପଣ ତ ନିଜେ ପ୍ୟାଣ୍ଟ ପିନ୍ଧିଛନ୍ତି, ଜାଣି ନଥିବେ କି ? ଆପଣଙ୍କୁ କେତେ ସମୟ ଲାଗୁଛି ?"

ବିଦେଶୀ ହୋ-ହୋ ହୋଇ ହସିଉଠିଲା । ଭାବିଲା, "ଆରେ ଇଏତ ଦୁଷ୍ଟୁଆ ପରି ଆଉ ଗୋଟାଏ ମସ୍ତବଡ଼ ମୂର୍ଖ । ଇମିତି ଏବେ ଦୁଇଜଣ ହେଲେ, ଆଉ ଜଣେ ହେଲେ ତ ମତେ ବୁଢ଼ୀଘରକୁ ଫେରିଯାଇ ତାଙ୍କୁଙ୍କୁ ବାହା ହେବାକୁ ପଡ଼ିବ ।"

ବିଦେଶୀ ପ୍ୟାଣ୍ଟଟାକୁ କଣ୍ଟାରୁ ବାହାର କରି ସେ ଲୋକଟାକୁ ପ୍ୟାଣ୍ଟ ପିନ୍ଧାଇବା ଶିଖାଇଦେଲା । ଲୋକଟା ତାକୁ ନମସ୍କାର କରି କହିଲା, "ଆପଣ ମୋର ବଡ଼ ଉପକାର କଲେ, ଆଜ୍ଞା । ଏତେ ସହଜରେ ପ୍ୟାଣ୍ଟ ପିନ୍ଧିହୁଏ ବୋଲି ମୁଁ ଆଜଯାଏ ଜାଣି ନଥିଲି ।"

ସେ ଗାଁ ଛାଡ଼ି ବିଦେଶୀ ଦିନଟାଯାକ ଚାଲିଲା । ସେମିତି ଆଉ ଗୋଟାଏ ହେଲେ ମୂର୍ଖ ଦେଖିବାକୁ ପାଇଲା ନାହିଁ । ଶେଷରେ ଅନ୍ଧାର ହେଲାବେଳକୁ ତାକୁ ଆଉ ଗୋଟିଏ ଗାଁ ଦେଖାଗଲା । ସେ ଗାଁ ଭିତରେ ପଶି ବିଦେଶୀ ଦେଖିଲା ଗାଁଟାଯାକ ଶୂନ୍‌ଶାନ୍ । ସବୁ ଘର କବାଟ ମେଲା । ଜଣେ କେହି ଘରେ ନାହାନ୍ତି । ଏଁ, ଏ କ'ଣ ? ଏଡ଼େ ସୁନ୍ଦର ଗାଁଟିଏ, ଲୋକଗୁଡ଼ାକ ଗଲେ କୁଆଡ଼େ ? ଗାଁରେ ଏ ମୁଣ୍ଡରୁ ଯାଇ ସେ ମୁଣ୍ଡରେ ପହଞ୍ଚିଲାବେଳକୁ ଗୋଟାଏ ବଡ଼ କୋଳାହଳ ଶୁଣିବାକୁ ପାଇଲା । ସେ ଦେଖିଲା ଖଣ୍ଡେ ଦୂରରେ ଗୋଟିଏ ବଡ଼ ପୋଖରୀହୁଡ଼ାରେ ଗୁଡ଼ାଏ ଲୋକ ଜମାହୋଇ ପାଟିତୁଣ୍ଡ କରୁଛନ୍ତି । ପାଖକୁ ଯାଇ ଦେଖିଲା, ପୋଖରୀ ଭିତରେ ଦଳେ ଲୋକ ପଶିଛନ୍ତି । କିଏ ଜାଲ ପକାଉଛି ତ କିଏ ପୋଲୁଅ ପକାଉଛି । ଆଉ ଗୁଡ଼ାଏ ଲୋକ ତେଣ୍ଟା, ଗଇନ୍ତି, ଖଣତି, ଶାବଳ ଆଦି ପାଣି ଭିତରେ ପୂରାଇ ପୋଖରୀର ପାଣିକୁ ମନ୍ଥି ପକାଉଛନ୍ତି, ମାତ୍ର କେହି ମାଛ ଧରୁନାହାନ୍ତି । ତେବେ ଲୋକଗୁଡ଼ାକ କରୁଛନ୍ତି କଅଣ ?

ବିଦେଶୀ ଜଣେ ଲୋକ ପାଖକୁ ଲାଗିଯାଇ ପଚାରିଲା, "କଥା କ'ଣ, ଏଠି ଏତେ ଲୋକ କ'ଣ କରୁଛନ୍ତି ?" ଲୋକଟା ଚିଡ଼ିଯାଇ

ଉତ୍ତର ଦେଲା, "କଥା କ'ଣ ଜାଣିପାରୁନାହଁ, ଭଗବାନ୍ କ'ଣ ତୁମ ମୁଣ୍ଡରେ ଟିକିଏ ବୁଦ୍ଧି ଦେଇ ନାହାନ୍ତି କି ଆଖିରେ ଟିକିଏ ହେଲେ ଶକ୍ତି ଦେଇ ନାହାନ୍ତି ? କହୋ, ଚନ୍ଦ୍ରଟା ପରା ଆକାଶରୁ ପୋଖରୀ ଭିତରକୁ କେମିତି ଛୁଟିପଡ଼ୁଛି । ଆମେ ତାକୁ ପୋଖରୀଭିତରୁ କାଢ଼ି ଆକାଶରେ ଲଗାଇ ଦେଲେ ତ ହେବ ! ହେଲେ ଆମେ ଯେତେ ଚେଷ୍ଟା କରୁଛୁ ସବୁ ବୃଥା । ପାଣି ଭିତରେ ସେଇଟା ଜମା ଧରାପଡ଼ୁନି ।"

ବିଦେଶୀ ଏ କଥା ଶୁଣି ବଡ଼ପାଟିରେ ହସିଉଠିଲା । କହିଲା, "ଉପରକୁ ଚାହିଁଲ, ଆକାଶରେ ପରା ଚନ୍ଦ୍ରଟା ଯିମିତି ସିମିତି ରହିଛି । ଛୁଟିପଡ଼ିଲା କେଉଁଠି ? ପୋଖରୀ ଭିତରେ କ'ଣ ଚନ୍ଦ୍ର ଅଛି ? ଯାହା ଦେଖୁଛ, ସେଇଟା ପରା ଚନ୍ଦ୍ରର ପ୍ରତିବିମ୍ବ ! ଚନ୍ଦ୍ର ଆକାଶରେ ନଥିଲେ ପୋଖରୀରେ ତା'ର ପ୍ରତିବିମ୍ବ ପଡ଼ିବ କୁଆଡ଼ୁ ?"

ବିଦେଶୀ କଥା ଶୁଣି ଲୋକଟା ଅଧିକ ଚିଡ଼ିଯାଇ କହିଲା, "ପ୍ରତିବିମ୍ବ ନା ଛତୁ ? ପ୍ରତିବିମ୍ବ ଗୋଟାଏ କ'ଣ ହୋ ? କେଉଁଠିକାର ଗଜମୂର୍ଖ ତୁମେ ? ଗଲ ଏଠୁ ।"

ତା' କଥା ନସରୁଣୁ ବିଦେଶୀ ଉପରେ ବିଧା, ଚାପୁଡ଼ା ବୃଷ୍ଟି ହୋଇଗଲା । ଦଳେ ଲୋକ ତାକୁ ତଡ଼ିନେଇ ଗାଁ ବାହାରେ ଛାଡ଼ିଦେଲେ ।

ବିଦେଶୀ ନିଜ ଦେହକୁ ଆଉଁସି ଆଉଁସି ଆଗକୁ ପାହୁଣ୍ଡ ପକାଇ ଚାଲିଲା । ଭାବିଲା, "ମୁଁ ଆଜି ଗୋଟାଏ ମୂର୍ଖ କ'ଣ ଖୋଜୁଥିଲି, ଏ ଗାଁଟା ତ ମୂର୍ଖଙ୍କର ଖଣି ।"

ସେ ଯେଉଁବାଟେ ଆସିଥିଲା ସେଇ ବାଟରେ ଫେରିଯାଇ ବୁଢ଼ା ଘରେ ପହଞ୍ଚିଲା । ଚତୁରୀ ସଙ୍ଗେ ତା'ର ବାହାଘର ମହା ଆଡ଼ମ୍ବରରେ ଶେଷ ହେଲା । ସେ ଦୁହିଁଙ୍କର ଯେତେ ପୁଅଝିଅ ହେଲେ ସବୁ ଏକରୁ ବଳି ଆରେକ ମୂର୍ଖ ।



# ଟିପା ଓ ଟିପି



ଦିନେ ଟିପା ଟିପିକୁ କହିଲା, "ଟିପି, ମୁଁ ବିଲକାମ କରିବାକୁ ଯାଉଛି, ଫେରିଲାବେଳକୁ ମୋ' ପେଟ ଜଳୁଥିବ । ତୁ ଆଜି ଭଲକରି ଖିଆପିଆର ଯୋଗାଡ଼ କରିଥିବୁ ।"

ଟିପି କହିଲା, "ବେଶ୍, ତୁ ଫେରିବା ବେଳକୁ ସବୁ ଠିକ୍‌ଠାକ୍ ହୋଇଯାଇଥିବ ।" ଟିପା ଚାଲିଗଲା ପରେ ଟିପି ମନେ ମନେ ଭାବିଲା, "ଟିପାକୁ ଶୁଖୁଆ ଭାରି ଭଲଲାଗେ । ଦୁଇଖଣ୍ଡ ବଡ଼ ଶୁଖୁଆ ତ ଅଛି, ଆଗ ଭାଜିଦିଏ ।" ଟିପି ଚୁଲି ଲଗାଇ ଶୁଖୁଆ ଭାଜିବସିଲା । ଦେଖିଲାବେଳକୁ ତେଲଟିନାରେ ତେଲ ନାହିଁ । ଶୁଖୁଆତକ ଚୁଲିମୁଣ୍ଡରେ ଥୋଇଦେଇ ଟିପି ଗମ୍ଭୀରିଘରକୁ ତେଲ ଆଣିବାକୁ ଗଲା । ତେଲ ମାଠିଆଟା

ଅଣାଇଦେଇଛି, ଏତିକିବେଳେ ତା'ର ମନେପଡ଼ିଲା କୁକୁରଟା ବନ୍ଧା ହୋଇନାହିଁ। ହାଣ୍ଡିଶାଳେ ପଶି ଶୁଖୁଆତକ ଧରି ଚମ୍ପଟ୍ କରିବ। ଟିପି ତେଲ ମାଠିଆଟା ସେମିତି ଛାଡ଼ିଦେଇ ହାଣ୍ଡିଶାଳକୁ ଦୌଡ଼ିଗଲା। ଦେଖିଲାବେଳକୁ ସତକୁ ସତ କୁକୁରଟା ଚୂଲିମୁଣ୍ଡରୁ ଶୁଖୁଆ ଦ'ଖଣ୍ଡପାକ ପାଟିରେ ଧରି ଧାଇଁ ପଳାଉଛି। ଟିପି କୁକୁର ପଛରେ ଦୌଡ଼ିଲା, ମାତ୍ର କୁକୁରକୁ ଆଉ ଧରେ କିଏ ?

ଟିପି ମନମାରି ଘରକୁ ଫେରିଲା। ଦେଖିଲାବେଳକୁ ତେଲତକ ମାଠିଆରୁ ବୋହିଯାଇ ଗମ୍ଭୀରଘର ଗୋଟାପାକ ହୋଇଗଲାଣି। ଟିପି ମନେ ମନେ କହିଲା, "ଆହା, କ'ଣ କଲି ? ତେଲମାଠିଆଟା ଅଣେଇ ରଖିଦେଇ ବାହାରକୁ ଚାଲିଗଲି। ଏବେ କରେ କ'ଣ ? ଟିପା ଘରକୁ ଫେରିଲେ ମତେ ଆଉ ରଖିବ ?" ଏତିକିବେଳେ ଟିପିକୁ ଗୋଟିଏ ବୁଦ୍ଧି ଦିଶିଲା। ସେ ଦେଖିଲା ଗୋଟିଏ ଅଖାରେ ଅଖାଏ ମଇଦାଚୂନା ରଖା-ହୋଇଛି। ସଙ୍ଗେ ସଙ୍ଗେ ଟିପି ମଇଦାଅଖା ଖୋଲିଦେଇ ମଇଦାତକ ଘରଚଟାଣ ଉପରେ ବିଞ୍ଚିଦେଲା। ମନେ ମନେ ଭାବିଲା, "ଏଥର ଘରଟି ବେଶ୍ ନିର୍ମଳ ହୋଇଗଲା। ଆଉ ଚିନ୍ତା କ'ଣ ?"

ଦିପହର ବେଳକୁ ଝାଳନାଳ ହୋଇ ଟିପା ଘରକୁ ଫେରିଲା। ପିଢ଼ାଟା ପକାଇ ବସିପଡ଼ି କହିଲା, "ଟିପି, କ'ଣ ରାନ୍ଧିଛୁ ଆଣ, ଭାରି ଭୋକ ହେଲାଣି।"

ଟିପି ମୁହଁଶୁଖାଇ ଉତ୍ତର ଦେଲା, "ଟିପା, ମୁଁ ଶୁଖୁଆ ଦ'ଖଣ୍ଡ ଚୂଲିମୁଣ୍ଡରେ ରଖିଦେଇ ତେଲ ଆଣିବାକୁ ଗମ୍ଭୀର ଘରକୁ ଯାଇଥିଲି। ଶିଘ୍ର ତେଲ ଢାଳିବାକୁ ମାଠିଆଟା ଅଣେଇ ଦେଇଛି, ମନେପଡ଼ିଲା କୁକୁର ମୁକୁଳା ଅଛି, ଶୁଖୁଆତକ ନେଇ ପଳାଇବ। ମୁଁ ତେଲମାଠିଆ ଛାଡ଼ି କୁକୁର ପଛରେ ଗୋଡ଼ାଇଲି। କୁକୁରଟା ଶୁଖୁଆ ନେଇ ପଳାଇଲା। ଏଣେ ସବୁଯାକ ତେଲ ଗମ୍ଭୀର ଘରେ ଢାଳିହୋଇଗଲା। ଚଟାଣକୁ ଶୁଖାଇବାକୁ ମୁଁ ମଇଦା ଅଖାଟି ଖୋଲିଦେଇ ମଇଦାତକ ତଳେ ବିଞ୍ଚିଦେଲି। ଦେଖିଲୁ, ଘରଟା କେମିତି ସଫା ହୋଇଯାଇଛି।"

ଝିପା ମୁଣ୍ଡରେ ହାତମାରି କହିଲା, "ଝିପି, ତୁ କଲୁ କ'ଣ ? ଚୁଲିମୁଣ୍ଡେ କାହିଁକି ଶୁଖୁଆତକ ଛାଡ଼ିଦେଇ ଗଲୁ, ମାଠିଆଟା ସଳଖି ନଦେଇ କୁକୁର ପଛରେ କାହିଁକି ଗୋଡ଼ାଇଲୁ ଆଉ ଶେଷରେ ମଇଦା ଅଖାକ ନଷ୍ଟକଲୁ କାହିଁକି ?"

ଝିପି ଝିପାକଥା ଶୁଣି ଆଶ୍ଚର୍ଯ୍ୟ ହେଲପରି କହିଲା, "ଏଁ, ମୁଁ କ'ଣ ଜାଣି ଜାଣି ସବୁ ଭୁଲ୍ କରିପକାଇଲି ? କାହିଁକି, ଏପରି ନକରିବାକୁ ତୁ ଆଗରୁ ମୋତେ କହିଲୁନି ?" ଝିପିର ଉତ୍ତର ଶୁଣି ଝିପା ବିଚାରିଲା, "ଭଲ ଘରଣୀଟିଏ ମୋତେ ମିଳିଛି । ଘରକାମ ଯଦି ଏମିତି ଚାଲେ ମତେ ଏଣିକି ସବୁ କଥାରେ ସତର୍କ ରହିବାକୁ ପଡ଼ିବ ।"

ଝିପା ପାଖରେ କେତେଗୁଡ଼ିଏ ସୁନା ମୋହର ଥାଏ । ଝିପା ସେଗୁଡ଼ିକ ଝିପିକୁ ଦେଖାଇ କହିଲା, "ଝିପି, ଦେଖୁଛୁ କେତେ ସୁନ୍ଦର ହଳଦିଆ ବୋତାମଗୁଡ଼ିଏ ମୁଁ ରଖିଛି ? ମୁଁ ଏଗୁଡ଼ିକ ବଗିଚା ଭିତରେ ଗାତଖୋଳି ରଖିଦେଉଛି । ତୁ ଯେପରି ଏହା ପାଖକୁ ନଯାଉ ।" ଝିପି ଉତ୍ତର ଦେଲା, "ମଲା, ମୁଁ କାହିଁକି ସେ ଜିନିଷରେ ଲାଗିବି ମ ? ତୁ ପରି ମନାକରୁଛୁ ?"

ଝିପା ସବୁଦିନ ପରି କାମ କରିବାକୁ ବିଲକୁ ଗଲା । ଘଡ଼ିଏ ଯାଇଛି କି ନାହିଁ ଦଳେ ବେପାରୀ ହାଣ୍ଡିମାଠିଆ ବିକିବାକୁ ସେ ଗାଁକୁ ଆସିଲେ । ଝିପିର ହାଣ୍ଡି ମାଠିଆରେ ବଡ଼ ଲୋଭ । ହେଲେ ତା' ପାଖରେ ତ କଉଡ଼ି ନାହିଁ, କରିବ କ'ଣ ? ଜଣେ ବେପାରୀକୁ ଡାକି କହିଲା, "ଦେଖ ଆମ ବଗିଚାରେ କେତେଗୁଡ଼ିଏ ହଳଦିଆ ବୋତାମ ପୋତା ହୋଇଛି । ତୁମର ଯଦି ଲୋଡ଼ା ସେତକ ନେଇ ମତେ କେତୋଟି ହାଣ୍ଡି ମାଠିଆ ଦିଅ ।"

ବେପାରୀ ହଳଦିଆ ବୋତାମ କଥା ଶୁଣି ତୁନି ହୋଇ କ'ଣ ବିଚାରିଲା । କହିଲା, "ଆଚ୍ଛା, କେମିତିକା ଜିନିଷ ଦେଖେ ।" ଝିପି କହିଲା, "ତୁମେ ନିଜେ ସେତକ ବଗିଚାରୁ ଖୋଳି ବାହାର କର । ମୁଁ ତା' ପାଖ ମାଡ଼ିବିନି ।"

ବେପାରୀଦଳ ମାଟିଦଖାଳ ସୁନା ମୋହରତକ ବାହାର କଲେ । ମୋହରତକ ଦେଖି ସେମାନଙ୍କ ମନ ଆନନ୍ଦରେ କୁତୁଳି ଉଠିଲା । ମନକଥା ମନରେ ରଖି ସେମାନେ କେତେଟା ହାଣ୍ଡି ମାଠିଆ ଟିପିକୁ ଦେଇ ସବୁତକ ମୋହର ନେଇ ଚମ୍ପଟ କଲେ ।

ଟିପା ଘରେ ନପଶୁଣୁ ଟିପି ଆନନ୍ଦରେ ଗଦ୍‌ଗଦ ହୋଇ କହିଉଠିଲା, "ଦେଖିଲୁ ଟିପା, ତୋର ସେଇ ହଳଦିଆ ବୋତାମଗୁଡ଼ାକ ବଦଳରେ ମୁଁ କେମିତିକା ବଢ଼ିଆ ମାଲ କିଣିଛି । ହେଲେ ତୋ ମନା ମାନି ମୁଁ ହଳଦିଆ ବୋତାମଗୁଡ଼ିକ ଜମା ଛୁଇଁନି । ତା' ପାଖ ମଧ୍ୟ ମାଡ଼ିନି । ବେପାରୀମାନେ ନିଜେ ବୋତାମଗୁଡ଼ାକ ବଗିଚାରୁ ଖୋଳି ବାହାର କରିନେଲେ ।" ଏ କଥା ଶୁଣି ଟିପାର ହଂସା ଉଡ଼ିଗଲା ପରି ଲାଗିଲା । ସେ କହିଲା, "ଟିପି, ତୁ କ'ଣ କଲୁ ? ମୋର ସେତିକି ବୋଲି ସୁନା ଥିଲା, ତୁ ସବୁ ଶେଷ କରିଦେଲୁ ?" ଟିପି କିଛି ବୁଝି ନପାରିଲା ପରି ଟିପାକୁ ଓଲଟି ଉତ୍ତର ଦେଲା, ଏଁ ଏକଥା ତ ମୁଁ ଜମା ଜାଣିନି ? ମତେ ଆଗରୁ କହିଲୁନି କାହିଁକି ?"

କିଛି ସମୟ ଚୁପ୍ ହୋଇ ରହିଲା ପରେ ଟିପି କହିଲା, "ଟିପା, ଚାଲ ଆମେ ସେ ଚୋରଗୁଡ଼ାକ ଧରିବା । ଆମ ସୁନାତକ ନିଶ୍ଚୟ ଆମକୁ ମିଳିଯିବ ।" ଟିପା ମନକୁ କଥାଟା ପାଇଗଲା । ସେ କହିଲା, "ଟିପି, କାଲି ରାତିରେ ଯେଉଁ ଛେନାମଣ୍ଡା କରି ରଖିଥିଲୁ, ସେତକ ଟୋକେଇରେ ପୂରାଇ ସଙ୍ଗରେ ଧର । ବାଟରେ ଭୋକ କଲେ ଖାଇବା ।" ଟିପି ହଁ କଲା ।

ଦୁହେଁ ଚୋର ଧରିବାକୁ ବାହାରି ପଡ଼ିଲେ । ଟିପା ବେଗେ ବେଗେ ଆଗରେ ଚାଲିଲା । ଟିପି ପଛରେ ପଡ଼ିଗଲା । ସେ ଭାବିଲା, "ମୁଁ ଏବେ ସିନା ପଛରେ ପଡ଼ିଯାଇଛି । ଫେରିଲାବେଳକୁ ମୁଁ ତ ଘରେ ଆଗେ ପହଞ୍ଚିବ ।"

ପାହାଡ଼ିଆ ବାଟରେ ଉପରକୁ ଉଠୁ ଉଠୁ ଟିପିର ଛେନା-ମଣ୍ଡାଟିଏ ତଳକୁ ପଡ଼ିଗଲା । ଟିପି ତା'ର ଚେଷ୍ଟା ପାଇଲା ନାହିଁ । ସେ ଭାବିଲା, ଆଉ ମଣ୍ଡାତକ ପଛରେ ଗଡ଼ାଇ ଦେଲେ, ପ୍ରଥମ ମଣ୍ଡାଟିର

ବାଟରେ ସେଗୁଡ଼ିକ ଗଡ଼ ଗୁଳିଯିବ । ଆଉ ପ୍ରଥମ ମଣ୍ଡାଟି ଧରି ଉଠି-ଆସିବ ଉପରକୁ । ପରିଶ୍ରମ କରି ପ୍ରଥମ ମଣ୍ଡାଟା ଖୋଜିବା ଦରକାର କ'ଣ ?

ଶେଷରେ ଟିପି ଟିପା ପାଖରେ ପହଞ୍ଚିଗଲା । ଟିପା କହିଲା, "ଟିପି, ଘରି ବେଳ ହେଲାଣି । ମଣ୍ଡା ବାହାର କର ।" ଟିପି ଉତ୍ତର ଦେଲା, "ଗୋଟିଏ ମଣ୍ଡା ଟୋକେଇରୁ ଖସିପଡ଼ି ତଳକୁ ଗଡ଼ିଯିବାରୁ ମୁଁ ସେଇ ବାଟରେ ଆଉ ମଣ୍ଡାଗୁଡ଼ିକ ଗଡ଼ାଇ ଦେଲି । ସେଗୁଡ଼ିକ ପ୍ରଥମ ମଣ୍ଡା ପାଖରେ ପହଞ୍ଚି ତା' ସାଙ୍ଗରେ ଏଠାକୁ ଉଠିଆସିବ ଯେ, ଟିକିଏ ରହ ।"

ଟିପା ହସିବ ନା କାନ୍ଦିବ ? କହିଲା, "କି ବୁଦ୍ଧି ତୋର ? ଏମିତି ଘରଣୀଟିଏ ନଥିଲେ ମୋର ଏ ଦଶା କାହିଁକି ହୁଅନ୍ତା ?" ଟିପି କହିଲା, "ମୁଁ କ'ଣ ଭୁଲ୍ କଲି ? କାହିଁକି, ଏପରି ନକରିବାକୁ ତୁ ମତେ କହିନଥିଲୁ ତ ?"

ଟିପା କହିଲା, "ହଉ, ଯାହା ହେବାର ହେଲାଣି । ଆଚ୍ଛା, ତୁ ଆସିଲାବେଳେ ବାଡ଼ ତାଟିଟା ବନ୍ଦ କରିଥିଲୁ ତ ?" ଟିପି ଉତ୍ତର ଦେଲା, "ମୋର ତ ସେ କଥା ମନେନାହିଁ !" ଟିପା କହିଲା, "ଯା, ଏତେ ଓଲିଟାଏ ତୁ ? ଏତିକ ତୋର ମନେପଡ଼ିଲା ନାହିଁ ?" ଟିପି କହିଲା, "ସେ କଥା ମତେ ଆଗରୁ କହିଲୁନି କାହିଁକି ? ଆଚ୍ଛା, ତୁ ଏଇଠି ବସିଥା' କି ମୁଁ ଘରକୁ ଯାଇ ସବୁ ଠିକ୍‌ଠାକ୍ କରିଦେଇ ଆସିବି ।" ଏତିକି କହି ଟିପି ଘରମୁହାଁ ଦୌଡ଼ିଲା । ଟିପା ପାଟିକରି କହିଲା, "ଟିପି, ଟିପି, ଆସିଲାବେଳକୁ କିଛି ଖାଇବାକୁ ଆଣିବୁ ।"

ଟିପି ଘରେ ପହଞ୍ଚି କିଛି ଖାଇବା ଜିନିଷ ଖୋଜିଲା । ଦେଖିଲା ଅଖାଏ ଭଜା ଚିନାବାଦାମ ଅଛି । ଟିପି ଅଖା ଗୋଟାକ ଉଠାଇଲା । ବାଡ଼ ତାଟିଟା ଭିତରଆଡ଼ୁ ବନ୍ଦ କରିଦେଇ ଭାବିଲା, "ଦାଣ୍ଡଆଡ଼ର ତାଟିକଥା ଟିପା ତ ମତେ କହିନି । ସେଇଟା ସାଙ୍ଗରେ ନେଇଗଲେ କ୍ଷତି କ'ଣ ?" ଟିପି ଦାଣ୍ଡଆଡ଼ର ତାଟିଟା ହୁଗୁଳାଇ ବାହାର କରିଦେଲା । ସେଇଟା ମୁଣ୍ଡାଇ ବାଦାମ ଅଖାଟା ତା' ଉପରେ ରଖି ଟିପା ପାଖକୁ

ଗ୍ଭଲଲ । ଟିପା ତାକୁ ଦେଖି ଅବାକ୍ । କହିଲା, "ଟିପି, ଏ କ'ଣ କଲୁ ? ଘରକୁ ମୁକୁଳା କରିଦେଇ ତାଟିଟା ମୁଣ୍ଡାଇ କରି ଆଣିଲୁ କାହିଁକି ?"

ଟିପି କହିଲା, "ବାଡ଼ତାଟିଟା ବନ୍ଦ କରିଦେବାକୁ ତୁ ଯିବା ମତେ କହିଥିଲୁ, ଦାଣ୍ଡଆଡ଼ର ତାଟି କଥା ତ କିଛି କହି ନଥିଲୁ । ମୁଁ ଭାବିଲି, ଏଇଟା ସାଙ୍ଗରେ ନେଇ ଆସିଲେ କାମ ସରିଲା । କିଏ ନେଇଯିବାର ଭୟ ଆଉ ନଥିବ । ଏଇଟା ଏଥର ତୁ ଜଗିଥା । ବାଦାମ କେତେ ଖାଇବୁ ଖା' ।"

ଟିପା ମୁଣ୍ଡରେ ହାତମାରି କହିଲା, "ହାୟରେ କପାଳ ! କାଳେ କିଏ ଘରେ ପଶି ଜିନିଷପତ୍ର ନେଇଯିବ, ସେଇ ଭୟରେ ମୁଁ ତତେ କହିଥିଲି ବାଡ଼ତାଟିଟା ବନ୍ଦ କରିଦେଇ ଆସିବୁ । ତୁ କଲୁ କ'ଣ ନା ଦାଣ୍ଡଆଡ଼ ତାଟିଟା ଉଠାଇ ଆଣିଲୁ । ବେଶ୍ ତୋର ବୁଦ୍ଧି ! ହଉ ଯେବେ ଆଣିଛୁ, ମୁଣ୍ଡେଇଥା ସେଇଟା ।" ଟିପି କହିଲା, "ବେଶ୍, ତାଟିଟା ମୁଁ ମୁଣ୍ଡାଉଛି । ହେଲେ ତା' ସାଙ୍ଗରେ ବାଦାମ ଅଖାଟା ମୁଣ୍ଡାଇ ପାରିବିନି । ଯେବେ ତୁ ସେଇଟା ନଧରିବୁ ତାଟି ଦେହରେ ଓହଳାଇ ଦେ ।" ଟିପା ଏ କଥାରେ ଜମା ଅମଙ୍ଗ ହେଲାନାହିଁ ।

ଦୁହେଁ ଚୋରର ଧରିବାକୁ ଗ୍ଭଲିଲେ । ଚୋରଙ୍କର ଦେଖା ମିଳିଲା ନାହିଁ । ସଞ୍ଜ ହୋଇ ଆସିବାରୁ ଟିପା ଟିପି ରାତିଟା କଟାଇବା ପାଇଁ ଗୋଟିଏ ଗଛ ଉପରେ ଚଢ଼ିଲେ । ଟିପି ତା' ବୋଝ ଧରି ବଡ଼ କଷ୍ଟରେ ଗୋଟିଏ ଡାଳ ଉପରେ ଯାଇ ବସିଲା ।

ରାତିରେ ଦଳେ ଲୋକ ଆସି ସେ ଗଛମୂଳରେ ପହଞ୍ଚିଲେ । ଜାଗାଟାକୁ ଭଲ ରୂପେ ଦେଖିନେବାକୁ ସେମାନେ ନିଆଁ ଜାଳିଲେ । ନିଆଁ ଆଲୁଅରେ ସେମାନଙ୍କୁ ଚିହ୍ନିପକାଇ ଟିପି ଟିପା କାନରେ ଫୁସ୍‌ଫୁସ୍ କରି କହିଲା, "ହିଁ, ଏଇ ଦଳ ତ ?" ଆଉ, "ତୁ ଚୁପ୍ ରହ ଟିପି, ଆମକୁ ଦେଖି ପକାଇଲେ ସେମାନେ ଚମ୍ପଟ କରିବେ ।"

ନିଆଁ ଲିଭିଯିବାରୁ ଟିପା ଗଛର ଆର ପାଖରେ ଆସ୍ତେ ଆସ୍ତେ ତଳକୁ ଓହ୍ଲାଇଲା । ଅଣ୍ଟିରେ ଅଣ୍ଟିଏ ପଥର ପୂରାଇ ଗଛ ଉପରକୁ ଉଠିଲା । ଗଛ ଉପରେ ବସି ସେଥିରୁ କେତେଟା ତଳକୁ ପକାଇଲା ।

ଚୋରମାନେ କୁହାକୁହି ହେଲେ—"ଆରେ, ପାହାନ୍ତିଆ ହୋଇ ଆସିଲାଣି ନା କ'ଣ ? ପାହାନ୍ତି ପବନରେ ଗଛରୁ ଫଳ ଝଡ଼ିପଡ଼ୁଛି ।"

ଏତେବେଳକୁ ଟିପି ତା' ବୋଝ ମୁଣ୍ଡାଇ ନାକେଦମ୍ ହେଲାଣି । ସେ ଭାବିଲା, "ଆରେ, ମୁଁ ଏତେବେଳଯାଏ ଜାଣିପାରି ନଥିଲି । ବାଦାମ ଅଖାଟା ତାଟିଠାରୁ ନିଶ୍ଚୟ ବେଶି ଭାରି ।"

ଫୁସ୍‌ଫୁସ୍ ହୋଇ ଟିପି ଟିପାକୁ କହିଲା, "ଟିପା, ଆଉ ଧରି ପାରିବିନି ! ବାଦାମଟକ ଗଡ଼ିଦେଲି ।" ଟିପା କହିଲା, ତତେ ମୋ' ରାଣ । ଜମା ସେ କଥା କରନା । ଆମେ ଧରା ପଡ଼ିଯିବା ।"

"ନା, ଆଉ ନୁହେଁ" କହି ଟିପି ଅଖାମୁହଁଟା ଖୋଲିଦେଲା । ବାଦାମଗୁଡ଼ାକ ଖଡ଼ ଖଡ଼ ଶବ୍ଦ କରି ଡାଳପତ୍ର ଗହଳରୁ ଚୋରମାନଙ୍କ ମୁଣ୍ଡ ଉପରେ ଅଜାଡ଼ି ହୋଇ ପଡ଼ିଲା । ଚୋରଗୁଡ଼ାକ ପାଟି କଲେ; "ଆରେ, ଅଦିନମେଘ ତ ଉଠାଇଥିଲା, କୁଆପଥର ବର୍ଷିଲା ନା କ'ଣ ?"

ଟିକଏ ରହି ଟିପି ଟିପାକୁ କହିଲା, "ଟିପା, ଆଉ ତାଟିଟା ରଖି ପାରିବିନି । ମୋ' ହାତମୁଣ୍ଡ କାଠ ହୋଇଗଲାଣି ।" ଟିପା ଦେଖିଲା ସର୍ବନାଶ ! ଚୋରଗୁଡ଼ାକ ନିଶ୍ଚୟ ସେ ଦୁହିଁଙ୍କୁ ଦେଖିପକାଇବେ । ଟିପିର ହାତକୁ ଟିକଏ ଟାଣିଦେଇ ଟିପା ଚୁପ୍‌ଚୁପ୍ କରି କହିଲା, "ଟିପି, ସେକଥା କରନାଟି, ଚୋରଗୁଡ଼ାକ ଆମକୁ ଦେଖିପକାଇବେ ।" ହେଲେ ଟିପି ଜମା ଶୁଣିଲାନି । "ହେଇ···ଗଲା···" କହି ତାଟିଟା ଗଡ଼ିଦେଲା । ସେଇଟା ଏଡାଳ ସେଡାଳ ପିଟିହୋଇ ଶେଷରେ ଚୋରମାନଙ୍କ ମୁଣ୍ଡ ଉପରେ ଭୁସ୍‌ଭାସ୍ ହୋଇ ଖସିପଡ଼ିଲା । ଚୋରଗୁଡ଼ାକ ଭୂତ କି ବ୍ରହ୍ମରାକ୍ଷସ ଭେଟିଲେ ଭାବି ବାପାଲେ, ମାଆଲେ, ଚିତ୍କାର କରି ପଡ଼ିଉଠି କଏ କୁଆଡେ ଦଉଡ଼ ପକାଇଲେ । ବୁଜୁଲିଗୁଡ଼ାକ ଯାଉଁଟି ନେଇ ଯିବାକୁ ସେମାନଙ୍କର ତର ସହିଲା ନାହିଁ ।

ଟିପାଟିପି ଗଛରୁ ଓହ୍ଲାଇ ଦେଖିଲେ ସେମାନଙ୍କର ସବୁ ସୁନା-ମୋହର ବୁଜୁଲି ଭିତରେ ସେମିତି ରହିଛି ।

ଟିପି ବୁଦ୍ଧିରେ ହଜିଲା ଧନ ମିଳିଲା । ଟିପା ଆଉ ଟିପି ଉପରେ ଜମା ରାଗ କଲାନାହିଁ ।

# ଏ କାହାର ଛବି ?



ଆଜିକାଲି ସିନା ଘରେ ଘରେ ଦର୍ପଣ ! ବାଟଘାଟରେ, ସ୍କୁଲ୍ କଲେଜରେ ପିଲାମାନେ ଘଡ଼ିକି ଘଡ଼ି ପକେଟରୁ ଟିକି ଦର୍ପଣମାନ କାଢ଼ି ଚେହେରା ମଜାଡ଼ି ପକାଉଛନ୍ତି । ହେଲେ ଅନେକଦିନ ତଳେ ଗୋଟିଏ ଗାଁରେ ଦର୍ପଣ କ'ଣ ଲୋକେ ଦେଖି ନଥିଲେ କି ଜାଣି ନଥିଲେ । ସେ ଗାଁର ପୁଅଝିଅ, ବୁଢ଼ାବୁଢ଼ୀ ସମସ୍ତେ ଏ ତା' ମୁହଁକୁ, ସେ ଯା' ମୁହଁକୁ ଚାହିଁ କିଏ ଦେଖିବାକୁ କେମିତି କୁହାକୁହି ହେଉଥିଲେ । ନିଜ ମୁହଁର ଛବି କେହି ନିଜେ ଦେଖି ନଥିଲେ ।

ଦିନେ ଜଣେ ବିଦେଶୀ ବାଟୋଇ ସେ ଗାଁ ଦେଇ କୁଆଡ଼େ ଯାଉଥିଲା । ସେ ତା ଟିକି ଦର୍ପଣଟି ଗାଁ ପୋଖରୀ କୂଳରେ ଛାଡ଼ିଦେଇ

ଚାଲିଗଲା । ସେ ଗାଁର କକସୁମ୍ ଦର୍ପଣଟି ପାଇଲା । ଏମିତି ଜିନିଷ ସେ ଆଗରୁ କେବେ ଦେଖି ନଥିଲା । ସେଇଟିକୁ ଚାହିଁ ସେ ଦେଖିଲା ସେଥିରେ ଅଛି ଗୋଟିଏ ଗୋରାମୁହଁ ଆଉ ଦୁଇଟି କଳା ବଡ଼ବଡ଼ ଆଖି । ସେ ବିଚାରିଲା, "କି ଆଶ୍ଚର୍ଯ୍ୟ ! ଏ ତ ମୋ' ବାପାଙ୍କ ଛବି ! ଏ ଛବି ଏଠିକି କେମିତି ଆସିଲା ? ଭଗବାନଙ୍କର କିଛି ନା କିଛି ଗୋଟାଏ ମତଲବ ଅଛି । ତା' ହୋଇନଥିଲେ ବାପାଙ୍କ ଛବିଟି ମୋ' ପାଖକୁ ଆସନ୍ତା କାହିଁକି ? ବାପା ତ କେଉଁଦିନୁ ମରିଗଲେଣି !"

କକସୁମ୍ ବଡ଼ ଯତ୍ନରେ ଦର୍ପଣଟିକୁ ରୁମାଲରେ ଗୁଡ଼ାଇ ପକେଟରେ ରଖିଲା । ଘରକୁ ଯାଇ ସେ ସେଇଟିକୁ ଲୁଚାଇ ଗୋଟିଏ ଫୁଲଦାନ ଭିତରେ ଥୋଇଦେଲା । କାହାକୁ ଏ କଥା କହିଲାନି । ତା' ସ୍ତ୍ରୀ ମଧ୍ୟ ଏ କଥାର ଟେର୍ ପାଇଲାନି । କକସୁମ୍ ଦିନରାତି ଛବିଟି କଥା ଭାବୁଥାଏ । ଏକୁଟିଆ ଥିଲାବେଳେ ଥରକୁ ଥର ଦର୍ପଣଟି କାଢ଼ି ଦେଖୁଥାଏ । ଯେଉଁ ଘରେ ଦର୍ପଣଟି ଥାଏ ସେ ଘରକୁ ସେ କାହାକୁ ଛାଡ଼ୁ ନଥାଏ ।

ଏମିତି କେତେଦିନ ଗଲା । ତା' ସ୍ତ୍ରୀ ଲିଲସି ତା'ର ହାବଭାବ ଦେଖି ମନରେ ସନ୍ଦେହ କଲା । କାମଦାମ ଛାଡ଼ି କକସୁମ୍ କାହିଁକି ଘରଟା ଭିତରେ ଲଙ୍ଗରପଙ୍ଗର ହେଉଛି ?

ଦିନେ ସେ ଘର ଭିତରକୁ ପଶିଗଲାବେଳକୁ ଲିଲସିକୁ ଜଣାଗଲା କକସୁମ୍ ଗୋଟାଏ ଚେପ୍ଟିଆ ଜିନିଷ ତରବରରେ ଫୁଲଦାନ ଭିତରେ ରଖିଦେଉଛି । ଲିଲସି ସେତେବେଳେ କିଛି କହିଲା ନାହିଁ । କକସୁମ୍ ଯେତେବେଳେ ବାହାରକୁ ଟିକିଏ ବୁଲିବାକୁ ଯାଇଛି, ଲିଲସି ଫୁଲଦାନ ଭିତରେ ହାତ ପୂରାଇ ଦର୍ପଣଟିକୁ ବାହାରକଲା । ଏଁ, ଏଇଟା କ'ଣ ? ଆରେ, ଏଇଟା ତ ଏକ ମାଇପି ଲୋକର ଛବି !

ଲିଲସିର ମୁହଁ ଫିକା ପଡ଼ିଗଲା । ତା'ର ମନରେ ଭାରି ରାଗହେଲା । ସେ ମନେ ମନେ ବିଚାରିଲା, "କକସୁମ୍ ଏ ଗରିବ ଘରକୁ ଆଉରି ଗୋଟାଏ ସ୍ତ୍ରୀ ଆଣିବାକୁ ବସିଲାଣି । ଏ ଘର କ'ଣ ଆଉ ଘର ହୋଇ ରହିବ ? ଆଚ୍ଛା, ସେ ଆସୁ । ଆଜି ତା'ର ଦିନେ କି ମୋର ଦିନେ ।"

କନକସୁମ୍ ଘରକୁ ଫେରି ଦେଖିଲା ଲିଲସି ଅଧାର ପରି ମୁହଁ କରି ବସିଛି । ରନ୍ଧାବଢ଼ା କରୁନାହିଁ । ସେ କରୁଛି ବୁଝିପାରିଲାନି । କହିଲା, "କଓ, ଆଜି କ'ଣ ଖିଆପିଆ ହେବନାହିଁ କି ? କାହିଁ, ରୋଷେଇ ଘରୁ ତ ଧୂଆଁ ବି ବାହାରୁନି ! ମତଲବ କଅଣ ?"

ଲିଲସି ଫାଉଁକନା ରଗିଯାଇ କହିଲା, "ମତଲବ କ'ଣ ନିଜକୁ ପଚାର । ଏ ଗରିବ ଘରକୁ ଆଉ ଗୋଟେ ସ୍ତ୍ରୀ ଆଣିବାର ମତଲବ କ'ଣ ଶୁଣେ ?"

କନକସୁମ୍ ଏ କଥା ଶୁଣି ଅବାକ୍ । ସେ କହିଲା, "ତୁମେ କ'ଣ କହୁଛ ମୁଁ ଜମା ବୁଝିପାରୁନାହିଁ । ତୁମକୁ ଭୂତ ଲାଗିଛି ନା କଅଣ ?"

ଲିଲସି ଆହୁରି ତେଜଉଠି କହିଲା, "ଭୂତ ତୁମକୁ ଲାଗିଛି, ମତେ ନୁହେଁ । ତା' ହୋଇ ନଥିଲେ ତୁମେ ଫୁଲଦାନ ଭିତରେ ଆଉ ଗୋଟାଏ ମାଇପି ଲୋକର ଛବି ଲୁଚାଇ ରଖିଥାନ୍ତ ?"

କନକସୁମ୍ ଧୀରସ୍ଥିର ହୋଇ ଉତ୍ତର ଦେଲା, "ଆରେ ତୁମେ ପାଗଳ ହୋଇଛ ନା କଅଣ ? ସେ ଛବିଟା କ'ଣ ମାଇପି ଲୋକର ଛବି ? ସେଇଟା ପରା ମୋ' ବାପାଙ୍କ ଛବି ! ସେ ଛବିଟା ମୁଁ ପୋଖରୀକୂଳରୁ ପାଇ ଏତେ ଯତ୍ନରେ ଫୁଲଦାନ ଭିତରେ ରଖିଛି । ତୁମେ ଏଡ଼େ ବୋକା ?"

ଲିଲସି ବଡ଼ପାଟି କରି କହିଲା, "ହଁ ହଁ, ମୁଁ ବୋକା ନୁହେଁ ଆଉ କ'ଣ ? ତୁମ ବାପା କ'ଣ ସ୍ତ୍ରୀଲୋକ ଥିଲେ ? ପୁରୁଷର ମୁହଁ ଆଉ ସ୍ତ୍ରୀର ମୁହଁ ମୁଁ ଚିହ୍ନିପାରୁନାହିଁ ବୋଲି କହୁଛ ?"

ଦୁଇ ଜଣଙ୍କ ଭିତରେ କଳିର ଧୂମ୍ ଲାଗିଗଲା । ସାଇପଡ଼ିଶା ଲୋକେ ଆସି ରୁଣ୍ଡ ହୋଇଗଲେ । ଛବି ଦେଖି ଜଣେ ବୁଢ଼ା ପାଟିକରି କହିଲା, "ଆରେ ଆରେ, କାହିଁକି ତୁଚ୍ଛଟାରେ କଳି ଲାଗିଛ ? ଇଏ ପରା ଗୋଟେ ପାକୁଆ ବୁଢାର ଛବି ?" ଏ କଥା ଶୁଣି ଜଣେ ଯୁବକ

କହିଉଠିଲ, "କହୋ ! ତୁମର ଦାନ୍ତ ନାହିଁ ବୋଲି ଆଖି ନାହିଁ ନା କଅଣ ? ଗଜା ଭେଣ୍ଡାଟାକୁ ତୁମେ ପାକୁଆ ବୁଢ଼ା ବୋଲି କହୁଛ ?"

ମାଇପିମାନେ ଛବି ଦେଖିବାକୁ ଆସି କହିଲେ, "ଆଉ ହେବନି, ଆଉ ହେବନି । ଏ ମିଣିପଗୁଡ଼ାକ ପାଗଳ ନା କଅଣ ? ମାଇପିଲୋକଟାର ମୁହଁଟାକୁ କେହି ଚହ୍ନିପାରୁନାହାନ୍ତି ?"

ଏମିତି ପାଟିତୁଣ୍ଡରେ ଗାଁ ପଡ଼ିଲା ଉଠିଲା ।

ଶେଷରେ ଗାଁ ପୁରୋହିତ କୁଆଡ଼ୁ ଆସି ପହଞ୍ଚିଗଲେ । ଏ ହଟ୍ଟଗୋଳ ଦେଖି ସେ ଆଗ କିଛି ଜାଣିପାରିଲେ ନାହିଁ । ବହୁତ କଷ୍ଟରେ ସମସ୍ତଙ୍କୁ ତୁନିଚାପ କରି କଥାଟା ବୁଝିଲେ । ସେଠୁ ସେ କହିଲେ, "ଏଥିପାଇଁ ଏତେ ଗୋଳମାଳ ? ଆଣ, ଛବିଟା ଦେଲ, ମୁଁ ଟିକିଏ ଦେଖେଁ ।" ଦର୍ପଣରେ ମୁଣ୍ଡଟା ଲଗାଇଦେଇ ସେ କହିଲେ, "ଓହୋ, କି ଭୁଲ୍ କରୁଛ ତୁମ୍ଭେମାନେ ? ଏ ଛବି ପରା ଜଣେ ପୁଣ୍ୟାତ୍ମା ସନ୍ନ୍ୟାସୀଙ୍କର । ତୁମ୍ଭେମାନେ କୁଆଡ଼ୁ ଏ ଛବିର ମହତ୍ତ୍ୱ ବୁଝିବ ?" ଏତିକି କହି ପୁରୋହିତ ଦର୍ପଣଟି ନେଇ ଦେଉଳ ଭିତରେ ରଖିଲେ । ଅନେକ ଦିନଯାଏ ଦର୍ପଣଟି ଦେଉଳରେ ପୂଜା ପାଇଲା ।



# ରାଜା ଓ ଛାରପୋକ



ଅନେକ ଦିନ ତଳେ ଜଣେ ରାଜା ଥିଲେ । ଧନ ବଳରେ ଆଉ ସୈନ୍ୟ ବଳରେ ତାଙ୍କ ସଙ୍ଗେ ସମାନ ହେଲା ଭଳି ଆଉ କେହି ନଥିଲେ । ରାଜାଙ୍କ କ୍ଷମତା ଯେତିକ ବଢ଼ୁଥାଏ ପ୍ରଜାମାନଙ୍କ ଦୁଃଖ ସେତିକ ବଢ଼ୁଥାଏ । ରାଜାଙ୍କ ଉପଦ୍ରବରେ ସେ ରାଜ୍ୟରେ ଲୋକେ ତ୍ରାହି ତ୍ରାହି ଡାକ ଛାଡ଼ୁଥାନ୍ତି । ହେଲେ ତାଙ୍କୁ ପାଟି ଫିଟାଇବ କିଏ ? ତୁଣ୍ଡ କହିଲେ ମୁଣ୍ଡ ରହିବ ନାହିଁ ।

ଏମିତି କେତେଦିନ ଗଲା । ଦିନେ କୁଆଡ଼ୁ କେଜାଣି ଗୋଟିଏ ଛାରପୋକ ଆସି ରାଜଧାନୀରେ ପହଞ୍ଚିଲା । ଆଗରୁ ରାଜଧାନୀରେ କେତେ ଛାରପୋକ ତ ଥା'ନ୍ତି । ହେଲେ ଏ ଛାରପୋକ ଏମିତି ସେମିତି ନୁହେଁ ।

ନଚାନ୍ତ ଗ୍ରେକଲା ନହେଲେ ସେ କାହାକୁ କାମୁଡ଼େ ନାହିଁ । କାମୁଡ଼ିଲେ ମଧ୍ୟ କାହାକୁ ବେଶି କଷ୍ଟ ଦିଏ ନାହିଁ । ଘର ଘର ବୁଲି ସେ ପ୍ରଜାଙ୍କ ମୁହଁରୁ ରାଜାଙ୍କର ଅତ୍ୟାଚାରର କାହାଣୀ ଶୁଣିଲା । ଶୁଣୁଶୁଣୁ ତା' ଦେହ ଶିରେଇ ଉଠୁଥାଏ ।

ଦିନେ ଛାରପୋକ ମନେ ମନେ ଠିକ୍‌କଲା, ମଲେ ମରିବ ପଛେ ରାଜାଙ୍କୁ ବୁଦ୍ଧି ନଶିଖାଇ ଛାଡ଼ିବ ନାହିଁ । ସେଦିନ ରାତିରେ ରାଜା ସବୁଦିନ ପରି ଖାଇପିଇ ଶୋଇବାକୁ ଗଲେ । ଟିକିଏ ନିଦ ଲାଗିଆସିଲା-ବେଳକୁ ତାଙ୍କୁ ଜଣାଗଲା ତାଙ୍କ ଦେହରେ ଯେମିତି ଝୁଣ୍ଟିଟାଏ ପୋଡ଼ି ହୋଇଗଲା ।

ରାଜା ଚିତ୍କାର କରିଉଠିଲେ, "ଓଃ ଝୁଣ୍ଟିଟାଏ ଏଠାକୁ କୁଆଡ଼ୁ ଆସିଲା ?"

ତାଙ୍କୁ ଶୁଭିଲା, "ଝୁଣ୍ଟି ନୁହେଁ ମଣିମା, ଛାରପୋକଟାଏ ମୁଁ, ତୁମକୁ ଭଲ ବୁଦ୍ଧି ଦେବାପାଇଁ ଏଠାକୁ ଆସିଛି ।"

ରାଜା ରାଗରେ ଅଥୟ ହୋଇ ପାଟିକଲେ, "ଏଁ, ଛାରପୋକଟାଏ ? ଆଚ୍ଛା, ଟିକିଏ ରହ, ଦେଖିବୁ କ'ଣ କରିବି । ଆରେ, ସାମାନ୍ୟ ଛାରପୋକଟାର ଗର୍ବ ତ କମ୍ ନୁହେଁ ।"

ରାଜା ଶେଯ ଉପରୁ ତଳକୁ ଫକ୍‌କରି ଡେଇଁପଡ଼ିଲେ । ଶେଯରୁ ଲୁଗାପଟା ତଳକୁ ଟାଣିଆଣି ଭଲକରି ବୁହାଟେ ଝାଡ଼ଝୁଡ଼ ପକାଇଲେ । ମାତ୍ର ଛାରପୋକକୁ ପାଇଲେନି । ସେ କେଉଁଠି ରହିଲା ତା'ର ପତ୍ତା ମିଳିଲା ନାହିଁ । ସେତେବେଳକୁ ଛାରପୋକଟା ରାଜାଙ୍କ ଗହଳିଆ ଦାଢ଼ି ଭିତରେ ପଶିଯାଇଥିଲା ।

ଛାରପୋକଟା କେଉଁଆଡ଼େ ଚାଲିଗଲାଣି ଭାବି ରାଜା ପୁଣି ବିଛଣାକୁ ସଜାଡ଼ିଦେଇ ଶୋଇବାକୁ ଚେଷ୍ଟାକଲେ । ମାତ୍ର ସେ ତକିଆ ଉପରେ ମୁଣ୍ଡ ରଖିଛନ୍ତି କି ନାହିଁ, ତାଙ୍କ କପାଳରେ ଚୁଟ୍ କରି ଫୁଟେ । ହାତ ମାରିଲା ବେଳକୁ କିଛି ନାହିଁ । ରାଜାଙ୍କ ରାଗ ତାଳୁକୁ ଚଢ଼ିଗଲା । ସେ

ଦାନ୍ତକାମୁଡ଼ ଚିତ୍କାର କଲେ, "ହେଁ, ଆଉଥରେ ତୁ ଆସିଲୁଣି ? ପାଜି, ସଇତାନ, ଦେଖିବାକୁ ବାଲିକଣା ପରି ବକଟେ, ତୁ ପୁଣି ମୋ ପରି ମହାପ୍ରତାପୀ ରଜା ସଙ୍ଗେ ଚାଳି ଦେଉଛୁ ? ଅଚ୍ଛା ରହ, ଯିବୁ କୁଆଡ଼େ ଏଥର ?" ରଜା ରାଗରେ ତମତମ ହୋଇ ପୁଣି ଲୁଗାପଟା ଖୋଜି-ପକାଇଲେ । ହେଲେ ତାକୁ ଧରିବା କ'ଣ ସହଜ ? ବାରମ୍ବାର ସେଇକଥା । ଦେହର ଗୋଟିଏ ସ୍ଥାନରେ ହାତମାରିଲା ବେଳକୁ ଅନ୍ୟ ସ୍ଥାନରେ ଫୁଟେଇ । ବଡ଼ ଗୋଟାଯାକ ରଜାଙ୍କ ଦେହସାରା କାମୁଡ଼ି କାମୁଡ଼ି ଛାରପୋକ ତାଙ୍କୁ ଅସ୍ତବ୍ୟସ୍ତ କରିପକାଇଲା ।

ସକାଳୁ ଉଆସସାରା ତଳୁ ଉପର ପର୍ଯ୍ୟନ୍ତ ଖୋଜାଖୋଜି ଚାଲିଲା । ଚାକରବାକର ସମସ୍ତେ ଲାଗି ଘରଦ୍ୱାର ସଫା କରି ପକାଇଲେ । ବିଜ୍ଞାନ ପଣ୍ଡିତ ଯେ ଯେଉଁଠି ଥିଲେ ସମସ୍ତେ ଆସି ଜମା ହୋଇଗଲେ । ସେମାନେ ଉଆସର ଅନ୍ଧିସନ୍ଧି ସବୁ ପରୀକ୍ଷା କରିପକାଇଲେ, ହେଲେ ଛାରପୋକଟିକୁ କେଉଁଠି ଦେଖିଲେ ନାହିଁ । ଶେଷରେ ସେମାନେ ଆସି ରଜାଙ୍କୁ କହିଲେ, "ମଣିମା, ଛାରପୋକର ବୋପା ବି ଉଆସରେ ଆଉ ରହି ପାରିବନି । ଏଥର ଆପଣ ନିଶ୍ଚିନ୍ତ ହୋଇ ପହଡ଼ କରନ୍ତୁ ।"

ତେଣେ ଚତୁର ଛାରପୋକ ରଜା ପିନ୍ଧିଥିବା କୋଟ୍‌ର ବେକପଟ ଭଙ୍ଗରେ ନିଶ୍ଚିନ୍ତ ମନରେ ଲୁଚି ରହିଥାଏ । ତାକୁ କିଏ କାହିଁକି ଦେଖିବ ? ସେଦିନ ରାତିରେ ରଜାଙ୍କୁ ଆହୁରି ଶୀଘ୍ର ନିଦମାଡ଼ିଲା । ସେ ଖାଇପିଇ ସଅଳ ଧୋବଫରଫର ବିଛଣାରେ ଶୋଇବାକୁ ଗଲେ । ଅଳ୍ପକ୍ଷଣ ଭିତରେ ପୁଣି ସେଇକଥା । ଗୋଟିଏ ଥର କାମୁଡ଼ାଖାଇ ରଜା ପାଟିକରି ଉଠିଲେ, "ଓଃ, ଏଇଟା ପୁଣି କଅଣ ?"

ଉତ୍ତର ମିଳିଲା, "ସେଇ ଛାରପୋକ, ମଣିମା !" ରଜା ବ୍ୟସ୍ତ-ହୋଇ କହିଉଠିଲେ, "ପୁଣି ସେଇ ବଜାତ୍ ଛାରପୋକ ? କାହିଁକି ତୁ ମୋ ସଙ୍ଗେ ଏମିତି ଲାଗିଛୁ ? କ'ଣ ତୋର ଇଚ୍ଛା ?" ଛାରପୋକ ଧୀରସ୍ଥିର ହୋଇ କହିଲା, "ଆଜ୍ଞା, ମୋ ପାନ କୁହାଟି ମାନନ୍ତୁ । ଏଥର ପ୍ରଜାମାନଙ୍କୁ ଟିକିଏ ସୁଖୀ କରନ୍ତୁ ।" ରଜା ଏକଥା ଶୁଣି ନିଆଁ ହୋଇଗଲେ । ସଙ୍ଗେ ସଙ୍ଗେ ଗର୍ଜନ କରିଉଠିଲେ । "ମୋର ସୈନ୍ୟ

କୁଆଡେ ଗଲେ ? ସେନାପତି କୁଆଡେ଼ ଗଲେ ? ମନ୍ତ୍ରୀ, ମନ୍ତ୍ରୀ, ଡକାଅ ସେ ସମସ୍ତଙ୍କୁ ।"

ରଜାଙ୍କ ପାଟିଶୁଣି ନଅର ସାରା କମ୍ପି ଉଠିଲା । କ୍ଷଣକ ଭିତରେ ମନ୍ତ୍ରୀ, ସେନାପତି, ସୈନ୍ୟ ଆସି ହାଜର ହୋଇଗଲେ । ରାଜାଙ୍କ ଶୋଇବାଘରୁ ଲୁଗାପଟା ସବୁ ବାହାର କରାଗଲା । ଶହ ଶହ ସିପାହୀ ଗୋଟି ଗୋଟି କରି ଲୁଗାପଟା ନେଇ ଠିକନଖି ପରୀକ୍ଷା କରିପକାଇଲେ । ହେଲେ ଘୁରପୋକ ଗଲା କୁଆଡେ ? ସେତେବେଳକୁ ଘୁରପୋକ ଯାଇ ରାଜାଙ୍କ ମୁଣ୍ଡବାଳ ଭିତରେ ଆଶ୍ରୟ ନେଇସାରିଲାଣି ।

ରଜା ଆଉ ଗୋଟିଏ କୋଠରୀକୁ ଯାଇ ଶୋଇବାକୁ ଚେଷ୍ଟା କଲେ । ମାତ୍ର ସେଠି କ'ଣ ରକ୍ଷା ମିଳୁଛି ? ଘୁରପୋକ ପୁଣି ବାହାରିପଡ଼ି ରଜାଙ୍କୁ କାମୁଡ଼ି ପାଗଳ କରି ପକାଇଲା । ରାତିସାରା ତାଙ୍କର ପଲକ ପଡ଼ିଲା ନାହିଁ । ସକାଳୁ ଉଠିପଡ଼ି ରଜା ସଙ୍ଗେ ସଙ୍ଗେ ଆଦେଶ ଦେଲେ, "ଯେତେ ଯେଉଁଠି ଘୁରପୋକ ଅଛନ୍ତି, ଗୋଟି ଗୋଟି କରି ମାରି-ପକାଅ ।" ଉଆସ ଭିତରେ ବାହାରେ ଚାରିଆଡ଼େ ଘୁରପୋକ ଖୋଜା ଚାଲିଲା, ରାଜ୍ୟ ଗୋଟାକର ପ୍ରଜା ଘୁରପୋକ ମାରିବାରେ ଲାଗିଲେ । ଲୋକଙ୍କର ଖିଆପିଆ, କାମଦାମ ସବୁ ବନ୍ଦ ।

ହେଲେ କ'ଣ ହେବ, କୌଣସି ଉପାୟରେ ରଜା ସେ ଅଦ୍ଭୁତ ଘୁରପୋକଟାକୁ ଆୟତ୍ତ କରିପାରିଲେ ନାହିଁ । ରାତିରେ ପୁଣି ତାଙ୍କର ସେଇ ଦଶା ହେଲା । ଘୁରପୋକ କାମୁଡ଼ାରୁ ତାଙ୍କୁ ରକ୍ଷା ମିଳିଲା ନାହିଁ ।

ରଜା ଶେଷରେ ହାରିଲେ । କାନ୍ଦକାନ୍ଦ ହୋଇ ଘୁରପୋକକୁ କହିଲେ, "ଆଚ୍ଛା କହ, ତୋର ଶେଷ ଇଚ୍ଛା କ'ଣ ? ଯାହା କହିବୁ କରିବ ।"

ଘୁରପୋକ ଚଢ଼ା ସ୍ୱରରେ ଉତ୍ତର ଦେଲା, "ଶୀଘ୍ର ଏ ରାଜ୍ୟଛାଡ଼ି ପଳାଅ ।"

ରଜା ଟିକିଏ ଚୁପ ହୋଇ ରହିଲେ । ପୁଣି ରୁହ୍, ରୁହ୍, ରୁହ୍ । ଶେଷରେ ସେ ଛଟପଟ ହୋଇ କହି ପକାଇଲେ, "ହଉ ବାବା, ରଜ

ହେଲ । ଏଥର କାମୁଡ଼ା ବନ୍ଦ କର । ରାଜ୍ୟ ଗ୍ଲାଡ଼ ତ ଯିବ । ତେବେ ସାଙ୍ଗରେ କିଛି ଧନସମ୍ପତ୍ତି ନେଇପାରେ କି ?"

ଗ୍ଲାରପୋକର ଟିକିଏ ଦୟା ହେଲା । ସେ କହିଲା, "ଆଚ୍ଛା, ତୁମର ଦୁଇ ପକେଟରେ ଯେତକ ସୁନା ଧରିବ ସେତକ ନେଇ ଚାଲି-ଯାଅ ।"

ସେଇ କଥା ହେଲା । ରାଜା ରାଜ୍ୟଗ୍ଲାଡ଼ ବାହାରିଗଲେ । ପ୍ରଜାମାନେ ଶାନ୍ତିରେ ନିଶ୍ୱାସ ମାରି ତେଣିକି ଖୁସିରେ ରହିଲେ ।



# ଅଳସୁଆଙ୍କ ବଂଶ ବୁଡ଼ିଲା



ଗୋଟିଏ ରାଜ୍ୟରେ ଜଣେ ଧନୀ ରାଜା ଥିଲେ । ତାଙ୍କ ଭଣ୍ଡାରରେ ଅକଳନ୍ତ ସୁନା, ରୁପା, ମଣି, ମାଣିକ୍ୟ ଭର୍ତ୍ତି ହୋଇଥାଏ । ରାଜାଙ୍କ ଉଆସ କଥା କଅଣ କହିବା ? ଉଆସ ସୁନାରେ ଗୁଡ଼ଣି ହୋଇଥାଏ; ତା'ର କାନ୍ଥବାଡ଼ରେ ହୀରା, ନୀଳା ଖଞ୍ଜା ହୋଇ ଦାଉଦାଉ ଜଳୁଥାଏ । ଆଉ ଚଟାଣରେ ଭଳିକି ଭଳି ରେଶମ ଛିଟ ବିଛାହୋଇ ଝଲମଲ ଦିଶୁଥାଏ । ରାଜା ତ ଧନରେ କୁବେର । ପାତ୍ର, ମନ୍ତ୍ରୀ, କୋଟୁଆଳ, ଏ ସମସ୍ତଙ୍କର ବି ଧନସମ୍ପତ୍ତି ପୂରି ରହିଥାଏ । ଦେଶରେ ଗରିବଲୋକ କେଉଁଠି କଦବ ଜଣେଅଧେ ଥା'ନ୍ତି, ମାତ୍ର ଭିକାରି ଜଣେ ହେଲେ ନଥାନ୍ତି ।

ପ୍ରତିଦିନ ସକାଳେ ରଜା ଦରବାରରେ ବସିକ ହୋଇ ପ୍ରଜାମାନଙ୍କ ହାଉଗୁହାରି ଶୁଣନ୍ତି । ହେଲେ ରାଜ୍ୟରେ ତ ଅଭାବ ନଥାଏ । ହାଉଗୁହାରି କଅଣ ? ଦିନକୁ ଦୁଇ ତିନଟା ମାତ୍ର ଦରଖାସ୍ତ ବିଚ୍ଛର ପାଇଁ ଆସେ ।

ଦିନେ ରଜା ପାତ୍ରମନ୍ତ୍ରୀମାନଙ୍କୁ ଡକାଇ କହିଲେ, "ମୁଁ ପ୍ରଜାମାନଙ୍କ ପାଇଁ ଯାହା କରିବାର କରିଛି । ମୋ ରାଜ୍ୟରେ ଅଭାବ ବୋଲି କିଛି ନାହିଁ । ଲୋକେ ପରିଶ୍ରମ କରୁଛନ୍ତି । ଦେଶ ବିଦେଶରେ ବାଣିଜ୍ୟ ବ୍ୟବସାୟ କରି, ଜମିବାଡ଼ିରେ ଫସଲ କରି ସୁଖରେ ଅଛନ୍ତି । ଯେଉଁ ଅଳ୍ପ କେତେଜଣ ଗରିବ ଅଛନ୍ତି, ସେମାନେ ସମସ୍ତେ ଅଳସୁଆ । ସେମାନଙ୍କ ପାଇଁ କିଛି କରିବାକୁ ହେବ । ମୁଁ ଭାବୁଛି ରାଜ୍ୟରେ ସବୁ ଅଳସୁଆ ଲୋକଙ୍କୁ ଏକାଠି କରି ରାଜଧାନୀରେ ରଖାଇବି । ସେମାନଙ୍କର କିଛି ଅଭାବ ରହିବ ନାହିଁ । ଘରଦ୍ୱାର, ଖାଦ୍ୟପେୟ ସବୁ ମୁଁ ଯୋଗାଇ ଦେବି । ତାହାହେଲେ ରାଜ୍ୟରେ ଜଣେ ହେଲେ ଦୁଃଖୀଲୋକ ରହିବେ ନାହିଁ ।"

ଏକଥା ଶୁଣି ସମସ୍ତେ ଅବାକ୍ । ଅଳସୁଆଗୁଡ଼ାକୁ ରାଜ୍ୟରୁ ନିକାଲି ନଦେଇ ରାଜା ସେମାନଙ୍କୁ ପୋଷିବେ ? ମୁଣ୍ଡ ଖରାପ ନା କଅଣ ? ହେଲେ ବଡ଼ଲୋକଙ୍କୁ ଉତ୍ତର ନାହିଁ । ରଜାଙ୍କ କଥାରେ ପାଟି ଫିଟାଇବ କିଏ ?

ରଜାଙ୍କ ଆଦେଶରେ ଉଆସ ଆଗରେ ଧାଡ଼ି ଧାଡ଼ି ଘର ତିଆରି ହେଲା । ମିସ୍ତ୍ରି, ମଜୁରିଆ ଦିନରାତି ଲାଗିଗଲେ । ଅଳ୍ପ କେତେଦିନ ଭିତରେ ସବୁ କାମ ଶେଷ । ଢୋଲଆଡ଼େ ଟମକ ଦିଆଗଲା—ରାଜ୍ୟରେ ଯେତେ ଅଳସୁଆ ଅଛ, ସମସ୍ତେ ଶୁଣ । ତୁମମାନଙ୍କ ଲାଗି ଉଆସ ଆଗରେ ଅନେକ ସୁନ୍ଦର ଘର ତିଆରି ହୋଇଛି । ମାଗଣାରେ ଖିଆପିଆର ସବୁ ବନ୍ଦୋବସ୍ତ କରାଯାଇଛି । ଶୀଘ୍ର ସମସ୍ତେ ରାଜଦରବାରକୁ ଆସି ଅଳସୁଆ ତାଲିକାରେ ନାଁ ଲେଖାଇଲେ ସବୁ ସୁବିଧା ତୁମ୍ଭମାନଙ୍କୁ ମିଳିଯିବ ।"

ଏ ଖବର ରାଜ୍ୟସାରା ଚହଳ ପକାଇଦେଲା । ଦେଖୁ ଦେଖୁ ଶହ ଶହ ଲୋକ ରାଜଧାନୀକୁ ଆସି ଅଳସୁଆ ତାଲିକାରେ ନାଁ ଲେଖାଇଲେ । ଦିନକୁ ଦିନ ବେଶୀ ବେଶୀ ଲୋକ ଆସି ରୁଣ୍ଡ ହେଲେ । ଯେତେ ଘର ତୋଳା ହୋଇଥିଲା, ସବୁ ଭର୍ତ୍ତି ହୋଇଗଲା । ରଜା ଆହୁରି

ନୂଆ ଘର ତୋଳାଇଲେ । ସେସବୁ ବ ଭରପୂର । ବାପ୍‌ରେ, ଏତେ ଅଳସୁଆ ଲୋକେ ଥିଲେ କେଉଁଠି ?

ରଜାଙ୍କ ଖିଆଲ ଯୋଗୁଁ ରାଜ୍ୟ ଛାରଖାର ହେବାକୁ ବସିଲା । ଲୋକେ କାମଧନ୍ଦା ଛାଡ଼ି ଅଳସୁଆ ତାଲିକାରେ ନାଁ ଲେଖାଇବାକୁ ଧାଇଁଲେ । ଏ ମଜା ଛାଡ଼େ କିଏ ? କିଛି କାମ ନକରି ଯେତେବେଳେ ରହିବା ପାଇଁ ସୁନ୍ଦର ଘର, ଆଉ ଖାଇବା ପାଇଁ ଦ୍ରବ୍ୟ ଭୋଜନ ମିଳୁଛି, କାମ କରିବାକୁ କାହାର କାହିଁକି ମନ ହେବ ? ରଜା ଦେଖିଲେ ଅବସ୍ଥା ଅଣଆୟତ୍ତ ହୋଇଗଲାଣି । ସେ ପୁଣି ମନ୍ତ୍ରୀସଭା ଡକାଇ ସମସ୍ତଙ୍କୁ କହିଲେ, "ମୁଁ ଦେଖୁଛି ଏତେ ଅଳସୁଆ ଲୋକଙ୍କୁ ଆଉ ଚଳାଇ ହେବନାହିଁ । ଲୋକେ ନିଜ ନିଜର ଜୀବିକା ଛାଡ଼ି ମୋ' ଖର୍ଚ୍ଚରେ ବଞ୍ଚିବାକୁ ସୁଖକର ମନେ କଲେଣି । ଏ ରାଜ୍ୟ ଆଉ ରହିବ ? ହେଲେ ଏତେ ଲୋକଙ୍କୁ ପୋଷିବାକୁ ଜବାବ ଦେଇ ସେମାନଙ୍କୁ ତଡ଼ିଦେବି କିପରି ? କି ଉପାୟରେ ପ୍ରକୃତ ଅଳସୁଆ ଲୋକଙ୍କୁ ରଖି ଅନ୍ୟମାନଙ୍କୁ ନିଜ ନିଜର ଘରକୁ ଫେରାଇ ଦେଇହେବ ?"

ରଜାଙ୍କ କଥାଶୁଣି ମନ୍ତ୍ରୀମାନେ ବିଚାରିଲେ, "ଯାହାହେଉ ଏତେ ଦିନକେ ରଜାଙ୍କର ଚେତା ପଶିଛି । ଦେଖାଯାଉ ଏଥର କି ବିଚାର ହେଉଛି ।"

ରଜା ପୁଣି କହିଲେ, "ଦେଖନ୍ତୁ, ମୁଁ ଗୋଟିଏ ଉପାୟ ପାଞ୍ଚିଛି । ରାତି ଅଧରେ ସମସ୍ତେ ଶୋଇ ରହିଥିବାବେଳେ ସେସବୁ ଘରେ ନିଆଁ ଲଗାଇଦେବା । ତାହାହେଲେ ଲୋକଗୁଡ଼ାକ ପ୍ରାଣ ବିକଳରେ ଯେ ଯାହା ଘରକୁ ଦୌଡ଼ି ପଳାଇବେ । ଆଉ କେବେ ରଜାଙ୍କ ସ୍ଥାୟୀ ଅତିଥି ହେବାକୁ ମନ ବଳାଇବେ ନାହିଁ ।"

ଏକଥା ପ୍ରଧାନମନ୍ତ୍ରୀଙ୍କ ମନକୁ ପାଇଲା । ସେ କହିଲେ, "ଚମତ୍କାର କୌଶଳ । ସେଇ କଥା କରାଯାଉ ।" ଅନ୍ୟ ମନ୍ତ୍ରୀମାନେ ମଧ୍ୟ ରଜାଙ୍କ ବୁଦ୍ଧିର ପ୍ରଶଂସା ନକରି ରହିପାରିଲେ ନାହିଁ ।

ରଜାଙ୍କ ଆଦେଶରେ କେତେ ଜଣ ବାଣୁଆଙ୍କୁ ଡାକରା ହେଲା । ବାଣୁଆମାନେ ଅନ୍ଧାରରେ ଅଳସୁଆଙ୍କ ଛାଉଣି ନିକଟକୁ ଯାଇ ଛପି

ରହିଲେ । ରାତିଅଧରେ ସବୁ ଶୂନ୍‌ଶାନ୍ ହେଲ ପରେ ସେମାନେ ଗଛ ଅଗରେ ନିଆଁ ହୁଳାମାନ ଯୋଖି ଘରମାନଙ୍କର ଛାଳକୁ ଲକ୍ଷ୍ୟ କରି ଛାଡ଼ିଲେ । ହୁହୁଁ ହୁହୁଁ ହୁତ୍‌ହୁତ୍ ହୋଇ ନିଆଁ ଜଳିଉଠିଲା । ଲୋକଗୁଡ଼ାକ ଧଡ଼୍‌ପଡ଼ ହୋଇ ଶେଯରୁ ଉଠି କବାଟ ଫିଟାଇଲେ । ଘରେ ଭୂତ ପଶିଛି ଭାବି ନଦ ବାଉଳାରେ ଉଡ଼ିଗୁଡ଼ି ଏଣେତେଣେ ଦୌଡ଼ି ପଳାଇଲେ । କାହାରି ପତ୍ତା ମିଳିଲା ନାହିଁ ।

କେବଳ ଚାରୋଟି ଲୋକ ଶୋଇରହିଲେ । ଏତେ କୋଳାହଳରେ ମଧ୍ୟ ସେମାନେ ନିଶ୍ଚଳ ହୋଇ ଶେଯରେ ପଡ଼ିରହିଥାନ୍ତି । ସେମାନଙ୍କ ଭିତରୁ ଜଣେ ଏତେ ଅଳସୁଆ ଯେ ଶେଯରୁ ଉଠି ତା' ଚାରିଆଡ଼େ କ'ଣ ହେଉଛି ଦେଖିବାକୁ ମନ ବଳାଇଲା ନାହିଁ । ଶେଷରେ ବହୁତ କଷ୍ଟରେ ଆଖିକୁ ଅଧାମେଲା କରି ଟିକିଏ ଚାହିଁଲା । ନିଆଁର ତେଜରେ ତା' ଆଖି ଝଲସିଗଲା । ସେ ତା' ପାଖକୁ ଲାଗି ଶୋଇଥିବା ସାଙ୍ଗକୁ କହିଲା, "ଦେଖ ଭାଇ, କେତେ ସୂର୍ଯ୍ୟ ଏକାବେଳେକେ ଉଇଁଛନ୍ତି, ଗୋଟାଏ ସୂର୍ଯ୍ୟର କ'ଣ ଏତେ ଆଲୁଅ ହୋଇପାରିବ ?"

ସାଙ୍ଗ ଉତ୍ତର ଦେଲା, "ଯା'ବେ । ମୁଁ ତ ଆରାମରେ ଶୋଇଛି, ଏତେ କଷ୍ଟ କରି ଆଖି ଖୋଲୁଛି କିଏ ? ଗୋଟାଏ ସୂର୍ଯ୍ୟ କି ଲକ୍ଷେ ସୂର୍ଯ୍ୟ ହେଲେ ମୋ'ର ଯାଏ କେତେ, ଆସେ କେତେ ? ଚୁପ୍ କର ।"

ତୃତୀୟ ଲୋକର ପିଠିରେ ଗୁଡ଼ିଏ ନିଆଁ ଧାସ ବାଜିଲା । ସେ ଏତେ ଅଳସୁଆ ଯେ, "ପିଠି ପୋଡ଼ିଗଲା" ବୋଲି କହିବାକୁ କଷ୍ଟ ବୋଧକରି ଖାଲି କହିଲା, "ପି...ପୋ...।"

ଶେଷ ଲୋକଟା ଏ କଥା ଶୁଣି କହିଲା, "ଚୁ...ଶୁ...", ଅର୍ଥାତ୍ "ଚୁପକରି ଶୁଅ ।" ସବୁକଥା କହିବାକୁ ତାକୁ ଅଳସ ବୋଧ ହେଲା ।

ଏତିକବେଳକୁ ରଜା ବାହାରେ ଝରକା ପାଖରେ ଠିଆହୋଇ ଚାରି ଅଳସୁଆଙ୍କ କଥା ଶୁଣୁଥିଲେ । ସଙ୍ଗେ ସଙ୍ଗେ ଏ ଲୋକଗୁଡ଼ାକୁ ଘର ଭିତରୁ ବାହାରକୁ ଘୋଷାରି ଆଣିବାକୁ ସେ ନିଜ ଲୋକଙ୍କୁ କହିଲେ । ସେ ଜାଣିଲେ ଏ ଚାରିଟା ତାଙ୍କ ରାଜ୍ୟର ଶ୍ରେଷ୍ଠ ଅଳସୁଆ ।

ସେମାନଙ୍କୁ ବାହାରକୁ ଅଣାଯିବା ପରେ ରାଜା ଆଦେଶ ଦେଲେ, "ଘୋଡ଼ା ଗୃବୁକ୍ ଆଣି ଏମାନଙ୍କୁ ପର୍ତ୍ତଣ ଗୃବୁକ୍ ଲେଖାଏଁ ଲଗାଅ ।" ସଙ୍ଗେ ସଙ୍ଗେ ଆଦେଶ ପାଳନ କରାଗଲା । ଗୃବୁକ୍ ଖାଇ ଅଳସୁଆଗୁଡ଼ାକ ଚିତ୍କାର କରି ଚଙ୍ଗୁଡ଼ି ପରି ଡେଇଁଲେ । ରାଜା ତାଙ୍କ ଲୋକଙ୍କୁ କହିଲେ, "ଏ ସବୁଠା ଅଳସୁଆଙ୍କୁ ନେଇ ଆମ ଘୋଡ଼ାଶାଳରେ ଘୋଡ଼ା ସଇସ କରି ରଖିଦଅ । କାମରେ ହେଳା କଲେ ଗୃବୁକ୍ ଲଗାଅ ।" ଏତକରେ ସେ ରାଜ୍ୟରୁ ଅଳସୁଆଙ୍କ ବଂଶ ନିପାତ ହୋଇଗଲା ।



# ପଣ୍ଡିତେ ଓ ପାଜି



ବାଜ ଓ ପାଜ ଦୁଇଭାଇ । ବଡ଼ଭାଇ ବାଜ ସାଧୁ ଓ ସରଳ, ମାତ୍ର ତା' ଦେହଟା ଯେମିତି ମୋଟା, ବୁଦ୍ଧିଟା ବି ସେମିତି । ସାନଭାଇ ପାଜ ଦେଖିବାକୁ ଖଡ଼ିକା ପରି । ହେଲେ କ'ଣ ହେବ ଭାରି ଗୁଇଁ । ଚୂଲନ୍ତା ଶଗଡ଼ରେ ହାତ ଦେବ । ନାଁଟା ଯେମିତି ଗୁଣଗ୍ରାମ ବି ସେମିତି । ଦିନେ ବାଜ ପଚାରିଲା, "ଦୁଇଭାଇ ଏମିତି ଖାଲି ବସି ବସି କେତେଦିନ ଚଳିବୁ ? ଘରେ ତ ଖାଇବାକୁ ଦାନା ନାହିଁ କି ପିନ୍ଧିବାକୁ କନା ନାହିଁ, ଏଥର କେଉଁଠି କାମଧନ୍ଦା ନଦେଖିଲେ ନଚଳେ ।"

ସେଠିକିବେଳକୁ ସେ ଗାଁ ପଣ୍ଡିତଙ୍କ ଘର ଚାକର ଖୋଜୁଥାନ୍ତି । ଖବର ପାଇ ବାଜ ପଣ୍ଡିତଙ୍କ ଦୁଆରେ ହାଜର ହେଲା । ପଣ୍ଡିତେ ଠିକଏ

କଡ଼ା ମିଜାଜ୍‌ର ଲୋକ । ତାଙ୍କ କଥା ଯେମିତି କାମ ବି ସେମିତି । ଯମର ପଛକେ ଦୟା ବୋଲି କିଛି ଥିବ, ପଣ୍ଡିତଙ୍କର ସେଥିରୁ କାଣିଚାଏ ବି ନାହିଁ । ସେଥିପାଇଁ ତାଙ୍କ ଘରେ ଚାକରିବାକରି ଟିକେ ରହିପାରନ୍ତି ନାହିଁ ।

ବାଜିର କଥା ଶୁଣି ପଣ୍ଡିତେ ଗଳା ସଫାକରି କହିଲେ, "ମୋର ଗୋଟିଏ ସର୍ତ୍ତ—ଚାକିରି ପାଇଲା ପରେ ତୁ ଯେବେ ନିଜ ଇଚ୍ଛାରେ କାମ ଛାଡ଼ୁ, ତେବେ ମୁଁ ତୋର କାନ କାଟିଦେବି । ଆଉ ମୁଁ ଯେବେ ତୋତେ ଚାକିରି ଛଡ଼ାଏ ତୁ ମଧ୍ୟ ମୋର କାନ କାଟି ଦେଇପାରୁ । ବାସ୍, ଏତିକି । ରାଜି ତ କାମ କର ନହେଲେ ଘରକୁ ଯା ।" ବାଜି ନରମ ଗଳାରେ କହିଲା, "ଆଜ୍ଞା ମୁଁ ରାଜି । ହେଲେ ଦରମାଟା ?" ପଣ୍ଡିତେ ଉତ୍ତର ଦେଲେ, "ଆରେ, ଦରମା ଆଉ କ'ଣ ? ଗୋଟିଏ ପଟ ପୂର୍ଣ୍ଣ କରି ସକାଳେ ଥରେ, ଉପରଓଳା ଥରେ ଖାଇବାକୁ ଦିଆଯିବ । ବର୍ଷ ପୂରିଲେ ଲୁଗାପଟା ଦି'ଖଣ୍ଡ ।" ବାଜି ଆଗପଛ ନବିଚାରି ପଣ୍ଡିତଙ୍କ କଥାରେ ରାଜି ହୋଇଗଲା ଓ କାମ ଆରମ୍ଭ କଲା ।

ଖାଇବାକୁ ଗଲା ବେଳକୁ ସାନବଡ଼ ପଟ ବାଛିବା ନକରି ଯେଉଁ ଗଛର ପଟ ହାତରେ ପଡ଼ିଲା, ସେଥିରୁ ଗୋଟିଏ ଧରି ହାଣ୍ଡିଶାଳ ପାଖକୁ ଯାଏ, ଯାହା ମିଳିଲା ଖାଏ । ଦେଖୁ ଦେଖୁ ତା' ଦେହ ଶୁଖି ବାଉଁଶ ପରି ହୋଇଗଲା ।

ଦିନେ ପାଜି ଭାଇର ରୂପ ଦେଖି କହିଲା, "ଭାଇ, ତୁମ ଚେହେରା ଏମିତି କ'ଣ ହେଲାଣି ? ଏ ଚାକିରି ପୋଷାଇବ ନାହିଁ । ଶୀଘ୍ର ଏହାକୁ ଛାଡ଼ ।" ବାଜି ଭାଇକୁ ଚାକିରି ସର୍ତ୍ତ କଥା କହିଲା । ସବୁ ଶୁଣି ପାଜି କହିଲା, "ଓହୋ, ଏଇ କଥା ? ଚାକିରି ଛାଡ଼ିଲେ ତୁମର କାନ କଟା ହେବ ? ଆଚ୍ଛା ଦେଖାଯାଉ ।"

ପାଜି ଯାଇ ପଣ୍ଡିତଙ୍କୁ କହିଲା, "ଆଜ୍ଞା, ମୋ ଭାଇ ବେମାରିଆ ହୋଇଗଲାଣି । ତାକୁ ଛାଡ଼ିଦିଅନ୍ତୁ । ତା' ବଦଳରେ ମୁଁ କାମ କରିବି ।" ପଣ୍ଡିତେ ଦେଖିଲେ ସାନ ଭାଇଟା ପତଳା, ଅଳ୍ପ ଖାଇବ, ଭାରି ଚଞ୍ଚଳିଆ ମଧ୍ୟ ଜଣାପଡ଼ୁଛି । ସେ ରାଜି ହୋଇଗଲେ ।

ବେଳ ହେଲରୁ ପାଜ ଗୋଟାଏ ବେଶ୍ ଲମ୍ବା କଦଳୀପତ୍ର ପକାଇ ଖାଇବାକୁ ବସିଗଲ୍ । ପତ୍ରଟା ଦେଖି ପଣ୍ଡିତଙ୍କ ସ୍ତ୍ରୀ ଗୁନଆ । ଏତେ ବଡ଼ ପତ୍ରରେ ଭାତ ତରକାରି ପରଶିବାକୁ ତାଙ୍କର ମାଲ କାହିଁ ? ହେଲେ ଉପାୟ କଅଣ ? ଆଉରି ହାଣ୍ଡିଏ ଅଧିକା ରାନ୍ଧି ପତ୍ରପୂରାଇ ପାଜକୁ ଦେଲେ । ପାଜ ଘରକୁ ଯେତିକ ଖାଦ୍ୟ ନେଲ୍, ସମସ୍ତେ ଖାଇ ସନ୍ତୁଷ୍ଟ । ସବୁଦିନ ଏମିତି ଚାଲିଲା । ପଣ୍ଡିତଙ୍କ ମନରେ ବଡ଼ ରାଗ ହେଲ୍ । ହେଲେ କ'ଣ କରିବେ ? ପାଜକୁ ଚାକିରିରୁ ବାହାର କରିଦେଲେ ନିଜ କାନ କଟାହେବ । ଭାବିଲେ ପାଜକୁ ଏମିତି କାମ ଦେବେ ଯେ ସେ ବାହୁ ବାହୁ ଡାକ ଛାଡ଼ିବ ।

ପଣ୍ଡିତେ ପାଜକୁ ଡାକି କହିଲେ, "ଦେଖ୍ ପାଜ, ସେ ଗଡ଼ିଆରେ ଅଳ୍ପ ପାଣି ଅଛି । ମାଟି ପକାଇ ତାକୁ ପୋତିଦେବୁ ।" ପାଜ ମହା ଖୁସି । ମନ ପାଇଲେ କେତେବେଳେ କେମିତି ଟୋକେଇରେ ମାଟି ଭର୍ତ୍ତି କରି ନେଇ ଗାଡ଼ିଆରେ ପକାଏ । ଦିନେ ପଣ୍ଡିତଙ୍କ ବୁଢ଼ୀମା ଗାଡ଼ିଆରେ ଲୁଗା ଧୋଉଛି । ତାକୁ ଦେଖି ପାଜ ଟୋକେଇଏ ମାଟି ମୁଣ୍ଡରେ ମୁଣ୍ଡାଇ ଗାଡ଼ିଆ ବନ୍ଧ ଉପରକୁ ଗଲ୍ । ବୁଢ଼ୀକୁ କହିଲ୍, "ବୁଢ଼ୀମା, ତୁମେ ତ ଗାଡ଼ିଆ ଭିତରେ ଲୁଗା ଧୋଉଛ, ମୁଁ ମାଟି କୋଉଠି ପକାଇବି ?" ବୁଢ଼ୀ ଚିଡ଼ିଯାଇ କହିଲ୍, "ମୋ ମୁଣ୍ଡରେ ପକା ।" ପାଜ ହଠାତ୍ ମାଟି ବୋଝକ ବୁଢ଼ୀମୁଣ୍ଡରେ କୁଢ଼ାଇ ଦେଲ୍ । ବୁଢ଼ୀ ମାଟି ଭିତରେ ପୋତି ହୋଇ ରଡ଼ିଗୁଡ଼ିଲ୍ । ତା' ରଡ଼ି ଶୁଣି ପଣ୍ଡିତଙ୍କ ଘରର ଲୋକେ ଧାଇଁ ଆସିଲେ । ସେମାନେ ବୁଢ଼ୀକୁ ମାଟି ଭିତରୁ ବାହାର କରି ଘରକୁ ଆଣିଲେ । ବୁଢ଼ୀ ଶେଯରେ ପଡ଼ି ଧୁକୁଧୁକୁ ହେଲ୍ । ପଣ୍ଡିତଙ୍କ ଘରେ କାନ୍ଦବୋବାଳି ପଡ଼ିଲ୍ ।

ପଣ୍ଡିତେ ରାଗରେ ନିଆଁ ହୋଇ ପାଜକୁ ମାରିବାକୁ ଧାଇଁଲେ । ପାଜ କହିଲ୍, "ମୁଁ କ'ଣ କରିବି ? ବୁଢ଼ୀମା କହିଲେ, 'ମାଟି ମୋ ମୁଣ୍ଡରେ ପକା' ।" ଏ କଥା ଶୁଣି ପଣ୍ଡିତଙ୍କ ଅକଲ ଗୁଡ଼ୁମ୍ ।

ସେତେବେଳକୁ ପଣ୍ଡିତଙ୍କ ଅଟାଳିକରେ କାମ କରୁଥିବା ମାଇପିମାନେ ଖୁସିରେ ଗୀତ ବୋଲୁଥାନ୍ତି । ପଣ୍ଡିତେ ବିରକ୍ତ ହୋଇ

ପାଜକୁ କହିଲେ, "ଯା, ଗୀତ ବନ୍ଦ କରିବାକୁ ସେମାନଙ୍କୁ କହିଦେ।" ପାଜ ଦୌଡ଼ିଯାଇ ମାଇପିମାନଙ୍କୁ କହିଲା, "ତୁମମାନଙ୍କ ଗୀତକୁ ମାଲିକ ଭାରି ପସନ୍ଦ କରିଛନ୍ତି। ଆଉରି ବଡ଼ପାଟିରେ ବୋଲ।"

ପୁଣି ସେମାନଙ୍କର ଗୀତ ଶୁଣି ପଣ୍ଡିତେ ତାଙ୍କୁରୁ ତଳପାଯାଏ ରାଗରେ ଥରିଲେ। ପାଜକୁ କହିଲେ, "ଯା, ସେମାନଙ୍କୁ କହିଦେ, ଯଦି ଗୀତ ବନ୍ଦ ନକରନ୍ତି ମୁଁ ସେମାନଙ୍କ ମୁଣ୍ଡ ଛଡ଼ୁ କରିଦେବି।" ପାଜ ଗଲାପରେ ଆଉରି ଜୋର୍‌ରେ ଗୀତର ସ୍ୱର ଶୁଣାଗଲା। ପଣ୍ଡିତେ ଆଉ ସମ୍ଭାଳି ନପାରି କାଠଫାଳିଆଟାଏ ଧରି ଅଟାକିଳ ପାଖକୁ ଦୌଡ଼ିଗଲେ। ଦୁଇ ତିନିଟା ମାଇପି ମୁଣ୍ଡରେ ଏମିତି ଜୋର୍ ପାହାର ଦେଲେ ଯେ ସେମାନେ ତଳେପଡ଼ି ମୂର୍ଚ୍ଛା ହୋଇଗଲେ। ଘରଆଡ଼େ ହାଲହୁଲ ପଡ଼ିଗଲା। ପଣ୍ଡିତେ ଉପରେ ସ୍ତ୍ରୀକୁ ଧରି ଚମ୍ପଟ କଲେ। ହେଲେ ପାଜ ପଣ୍ଡିତଙ୍କ ସାଙ୍ଗ ଛାଡ଼ିଲା ନାହିଁ।

ଅନେକ ଦୂରରେ ପଣ୍ଡିତଙ୍କର ଖଣ୍ଡିଏ ପଡ଼ିଆଜମି ଥାଏ। ପଣ୍ଡିତେ ସେଇଠି ଡେରା ପକାଇଲେ। ଲଙ୍ଗଳ ନେଇ ପଡ଼ିଆଟା ଚାଷ କରିବାକୁ ସେ ପାଜକୁ କହିଲେ। ପାଜ ପଡ଼ିଆ ଗୁରିପାଖେ ଥରେ ଲଙ୍ଗଳ ବୁଲାଇଦେଇ କାମ ବନ୍ଦ କରିଦେଲା।

ତା'ପରେ କିଛି ଜାଳେଣିକାଠ ଓ ଶିକାର କରି ମାଂସ ଆଣିବାକୁ ପଣ୍ଡିତେ ପାଜକୁ ହୁକୁମ ଦେଲେ। ପାଜ ଏକଥା ଶୁଣି ଲଙ୍ଗଳଟାକୁ ଖଣ୍ଡ ଖଣ୍ଡ କରି ହାଣିଦେଲା ଓ ମାଲିକଙ୍କ କୁକୁରଟାକୁ ମାରି ମାଂସ କରିଦେଲା। ସେ କାଠରେ କୁକୁରମାଂସ ରାନ୍ଧି ପଣ୍ଡିତେ ଓ ତାଙ୍କ ସ୍ତ୍ରୀ ହବ୍ୟଭୋଜନ କଲେ। ଖାଇସାରି ଯେତେବେଳେ ପଣ୍ଡିତେ କୁକୁରକୁ ଡାକିଲେ, ପାଜ କହିଲା, "ଆଜ୍ଞା, କୁକୁର ଆଉ ଆସିବ କୁଆଡ଼ୁ ? ମୁଁ ପରା ତାକୁ ଶିକାର କରି ଆପଣଙ୍କୁ ମାଂସ ଦେଇଥିଲି ?" ଏକଥା ଶୁଣି ପଣ୍ଡିତେ ଓ ତାଙ୍କ ସ୍ତ୍ରୀ ମୁଣ୍ଡ କୋଡ଼ିହେଲେ। ଆଉ ଏବେ କରିବେ କଅଣ ? ହେଲେ ପାଜକୁ ବିଦାୟ କରିବେ କପରି ? କାନମୁଣ୍ଡା ଆଉଁସି ତୁନି ହୋଇ ରହିଲେ।

ଶେଷରେ ପଣ୍ଡିତେ ତାଙ୍କ ପଡ଼ିଆ ଜମି ଦେଖିବାକୁ ଗଲେ । ଦେଖିଲେ ଚାଷ ନା ବାସ । ପଡ଼ିଆ ଭିତରେ ଲଙ୍ଗଳରେ ଗୋଟିଏ ଗାର ବି ପଡ଼ିନାହିଁ । ପାଜିକୁ ପଚାରିବାରୁ ସେ କହିଲା, "ଆଜ୍ଞା, ମୁଁ ସବୁ ପଡ଼ିଆର ଚାରିଆଡ଼ ଚାଷ କରିଦେଇଛି ।" ପଣ୍ଡିତେ ଖପା ହୋଇଯାଇ କହିଲେ, "ମୂର୍ଖ, ଯା ଲଙ୍ଗଳ ଆଣି ଏଇକ୍ଷଣି ଚାଷକର ।" ପାଜି କହିଲା, "ଲଙ୍ଗଳ ଆଉ ଆସିବ କୁଆଡ଼ୁ ଆଜ୍ଞା ? ସେଇଟା ସବୁ ଜାଳେଣି କାଠ ହୋଇଗଲା ।" ପଣ୍ଡିତେ ରାଗରେ ଗରଗର ହେଲେ, ମାତ୍ର ତାଙ୍କ ପାଟିରୁ ଆଉ କଥା ବାହାରିଲା ନାହିଁ ।

ତା' ପରେ ଡେରା ଭାଙ୍ଗି ଆଗକୁ ଯିବା କଥା ହେଲା । ପଣ୍ଡିତେ ପାଖ ଗାଁକୁ ଯାଇ ଗୋଟିଏ ଘୋଡ଼ା କିଣିଲେ । ଦିନେ ଘୋଡ଼ାକୁ ଟିକିଏ ବୁଲାଇ ଆଣିବାକୁ ପାଜିକୁ କହିଲେ । ପାଜି ଘୋଡ଼ାକୁ ବୁଲାଇ ଆଣିବା ବାହାନାରେ ତାକୁ କିଛିଦୂର ନେଇ ବିକ୍ରି କରିଦେଲା ଓ ଟଙ୍କାତକ ନିଜ ପକେଟ୍‌ରେ ପକାଇଲା । ଘୋଡ଼ା ବିକିଲାବେଳେ ତା' ଲାଞ୍ଜଟି ରଖିବ ବୋଲି ସର୍ତ୍ତ କରି ନିଜେ ଲାଞ୍ଜଟି କାଟି ରଖିଲା । ସେ ପଣ୍ଡିତଙ୍କ ତମ୍ବୁପାଖକୁ ଯାଇ ସେଠାରେ ଘୋଡ଼ା ଲାଞ୍ଜର ମୂଳଟା ପୋତିଦେଲା ଓ ଅଗଟା ଧରି ପାଟିକଲା—"ଦୌଡ଼ିଆସନ୍ତୁ ଆଜ୍ଞା, ଦୌଡ଼ିଆସନ୍ତୁ । ସବୁ ସରିଗଲା ।" ପଣ୍ଡିତେ ବାହାରକୁ ଆସିବାମାତ୍ରେ ପାଜି ଲାଞ୍ଜଟା ଟାଣିଦେଇ ଦୁଲ୍‌କରି ତଳେ ପଡ଼ିଗଲା । ପାଟିକରି କହିଲା, "ଆପଣ ତ ଡେରି କରିଦେଲେ, ମୁଁ କ'ଣ କରିବି ? ଘୋଡ଼ାଟା ମାଟିଭିତରେ ପଶିଗଲା, ଲାଞ୍ଜଟା ଛିଡ଼ିଯାଇ ମୋ ହାତରେ ରହିଯାଇଛି ।"

ପଣ୍ଡିତେ ଦେଖିଲେ ପାଜିଟା ତାଙ୍କର ସର୍ବନାଶ କଲାଣି । ତେବେ ତାକୁ ତଡ଼ିବେ କିପରି ? ତା' ହେଲେ ନିଜର କାନ କଟିଯିବ ।

ସେତେବେଳକୁ ପଣ୍ଡିତଙ୍କ ଶ୍ୱଶୁରଘର ପାଖ ହୋଇଗଲାଣି । ପଣ୍ଡିତେ ପାଜିକୁ କଅଁଳେଇ କହିଲେ, "ବାପ ପାଜି, ସେ ଯେଉଁ ଗାଁ'ଟି ଆଗରେ ଦେଖୁଛୁ, ସେ ଗାଁ'ରେ ମୋ ଶ୍ୱଶୁରଘର । ଉତ୍ତରସାହିର ପ୍ରଥମ ଘରଟି ତାଙ୍କର । ତୁ ଆଗରେ ଯାଇ ଖବର ଦେବୁ ଝିଅ-ଜ୍ୱାଇଁ ଆସୁଛନ୍ତି । ସେମାନେ ବଡ଼ ହାଲିଆ ହୋଇପଡ଼ିଛନ୍ତି । ପହଞ୍ଚିଲା ମାତ୍ରେ କିଛି ଖାଇ ବିଶ୍ରାମ ନେବେ ।"

ପାଜ ଆଗରେ ଦୌଡ଼ିଗଲା । ପଣ୍ଡିତଙ୍କ ଶ୍ୱଶୁରଘରେ ପହଞ୍ଚି କହିଲା, "ଝିଅ ଜ୍ୱାଇଁ ଆସୁଛନ୍ତି । ସେମାନଙ୍କ ଦେହ ବଡ଼ ଖରାପ । ଡାକ୍ତର କହିଛି, ସେମାନେ ଖାଲି ଶୁଖିଲା ଲୁଣିଆ ରୁଟି ଖାଇବେ । ଆଉ ଭୂଇଁ ଉପରେ ସତରଞ୍ଜି ପକାଇ ଶୋଇବେ ।"

ପଣ୍ଡିତେ ତାଙ୍କ ସ୍ତ୍ରୀ ସଙ୍ଗେ ଶ୍ୱଶୁର ଘରେ ପହଞ୍ଚି ଦେଖିଲେ ସେମାନଙ୍କର ଖାଇବା ପାଇଁ ଶୁଖିଲା ରୁଟି ଦୁଇପଟ ଲେଖାଏଁ ବଢ଼ା ହୋଇଛି ଓ ଶୋଇବାକୁ ଭୂଇଁ ଉପରେ ସତରଞ୍ଜି ଦୁଇଟି ବିଛାହୋଇଛି । ପଣ୍ଡିତେ ମନେ ମନେ ଭାବିଲେ, "ଇଏ କ'ଣ ? ଆମ ପ୍ରତି ଏମିତି ବେନଜର କାହିଁକି ? ଏବେ କ'ଣ ଶ୍ୱଶୁରଘର ଅବସ୍ଥା ଏତେ ଖରାପ ହୋଇଗଲାଣି ? କେଜାଣି, ହୋଇଥିବ !" ଦୁହେଁ କର୍ମ ଆଦର ଚୁପ୍‌ଚାପ୍ ରହିଲେ ।

ତହିଁଆରଦିନ ପଣ୍ଡିତଙ୍କ ସ୍ତ୍ରୀ ସବୁକଥା ବାହାରକଲେ । ସମସ୍ତେ ଜାଣିଲେ ସବୁ ନାଟର ଗୋବର୍ଦ୍ଧନ ସେଇ ପାଜ । ପାଜକୁ ଯେମିତି ହେଉ ନିକାଲିବାକୁ ହେବ । ନହେଲେ ଆଉ ରକ୍ଷା ନାହିଁ ।

ପଣ୍ଡିତଙ୍କ ଶଳା ବଡ଼ ଚତୁର ଲୋକ । ସେ ପାଜକୁ ଏକ ନିରୋଳା ସ୍ଥାନକୁ ଡାକନେଇ କହିଲେ, "ବାପ ପାଜ, ଯାହା ହେବାର ହେଲାଣି । ପଣ୍ଡିତେ ତୋ ବୁଦ୍ଧି ଆଗରେ ହାର ମାନିଲେଣି । ତୁ ତାଙ୍କ କାନ କାଟିବା କଥା ଭୁଣ୍ଡିରେ ନଧରି ଏଇଠାରୁ ବିଦାୟ ନେ । ମୁଁ ତୋତେ ପାଞ୍ଚଶହଟଙ୍କା ପୁରସ୍କାର ଦେଉଛି ।"

ପାଜ ତ ନିଜେ ଚାକିରି ଛାଡ଼ିବାକୁ ବାଟ ଖୋଜୁଥିଲା । ଦେଖିଲା ହାତେ ହାତେ ପାଞ୍ଚଶହଟଙ୍କା ମିଳିଯାଉଛି । ସେ ଆଉ ଆପତ୍ତି କରନ୍ତା କାହିଁକି ?



# କୁହୁକ ରତ୍ନ



ଏ ତୁମ ଜେଜେବାପା କି ତାଙ୍କ ଜେଜେବାପାଙ୍କ ବେଳର କଥା ନୁହେଁ । ଆହୁରି ଅନେକ ଦିନ ତଳର କଥା । ସେତେବେଳେ ଚନ୍ଦ୍ର କି ତାର କିଛି ନଥିଲ । ଆକାଶଟା ଖାଲି ଶୂନ୍ୟ ଥିଲ ।

ସେ କାଳରେ ଏକ ରାଜ୍ୟରେ ଜଣେ ରାଜା ଥାନ୍ତି । ସେ ରାଜ୍ୟର ଲୋକଗୁଡ଼ାକ ନିପଟ ଅଳସୁଆ । କାମଦାମ ନକରି ଦିନସାରା ଖାଲି ହାଇମାରୁଥାନ୍ତି । କାମ କରିବାକୁ କୁଆଡ଼େ ଗଲେ ବାଟରେ ଗଛମୂଳେ ଶୋଇପଡ଼ନ୍ତି ।

ରାଜାଙ୍କର ଗୋଟିଏ ସୁନ୍ଦର ଧାନକ୍ଷେତ ଥାଏ । ତାକୁ ଜଗିବା ପାଇଁ ଜଣେ ଜଗୁଆଳ ଥାଏ । କିନ୍ତୁ ସବୁଦିନେ କିଏ କେଜାଣି ସେ

କ୍ଷେତରେ ପଶି ଗଛସବୁ ଖାଇ ଫସଲ ଉଜାଡ଼ ଦେଇ ଚାଲିଯାଏ । କିଏ ଏମିତି କରେ ରାଜା ମୋଟେ ଜାଣିପାରନ୍ତି ନାହିଁ । ପ୍ରତିଦିନ ରାତିରେ ରାଜା ଜଣେ ନୂଆ ଜଗୁଆଳି ରଖନ୍ତି । ମାତ୍ର ଯେଉଁ କଥାକୁ ସେଇ କଥା । ଜଗୁଆଳି କ୍ଷେତ ଜଗୁ ଜଗୁ ନିଘୋଡ଼ ନିଦରେ ଶୋଇପଡ଼େ । ସକାଳୁ ଦେଖିଲାବେଳକୁ ସବୁ ସଫା ।

ରାଜାଙ୍କର ମହା ଭ୍ରକେଣି ପଡ଼ିଲା । କରିବେ କ'ଣ ? ଦିନେ କ'ଣ ହେଲା ନା ରାଜଧାନୀର ଲୋକେ ଗୋଟାଏ ନିପଟ ବୋକା ଲୋକକୁ ବଜାର ଭିତରେ ଦେଖି ତା' ସଙ୍ଗେ କୌତୁକ କରିବାକୁ ବସିଲେ । ତାକୁ କହିଲେ, “ଏ ବୋକା, ତୁ ଏଣେତେଣେ ବୁଲୁଛୁ କାହିଁକି ? ରାଜାଙ୍କର ଜଣେ ଜଗୁଆଳି ଲୋଡ଼ା । ତୁ ଉଆସକୁ ଯାଉନୁ । ଭଲ ଚାକିରିଟିଏ ମିଳିଯିବ ।”

ସତକୁ ସତ ବୋକାଟା ରାଜାଙ୍କ ପାଖରେ ହାଜର ହୋଇଗଲା । କହିଲା, “ମଣିମା ମୋତେ ଜଗୁଆଳି କରି ରଖ । ମୁଁ ଭଲ କାମ କରିବି ।”

ରଜା ମୁରୁକିହସା ଦେଇ କୌତୁକ କରିବାପାଇଁ କହିଲେ, “ଆଚ୍ଛା, ତୋ କଥା ହେଉ । ଆମ ଧାନକ୍ଷେତ ତୁ ରାତିରେ ଜଗିବୁ । କିନ୍ତୁ ମନେରଖ, ଯଦି କେହି ଆସି ଫସଲ ନଷ୍ଟ କରେ, ତେବେ ତୋ' ମୁଣ୍ଡକାଟ ହେବ ।”

ବୋକାଟା ହେଁ-ହେଁ ହସି ରାଜି ହୋଇଗଲା । ସନ୍ଧ୍ୟା ପହରୁ ମଣିଷେ ଉଚ୍ଚ ଠେଙ୍ଗାଟିଏ ଧରି ଧାନକ୍ଷେତରେ ଯାଇ ହାଜର । ରାତି ଆସିଲା । ତାକୁ ଭାରି ନିଦମାଡ଼ିଲା । ହେଲେ ରାଜାଙ୍କ କଥା ମନେ ପଡ଼ି-ଯାଉଥାଏ—କେହି ଆସି ଫସଲ ନଷ୍ଟ କଲେ ମୁଣ୍ଡକାଟ ହେବ । ସଙ୍ଗେ ସଙ୍ଗେ ସେ ଆଖି ମଳି ମଳି ଠେଙ୍ଗାଟି ସଳଖି ଠିଆହୋଇଯାଏ ।

ରାତି ବହୁତ ହେଲା । ହଠାତ୍ ଦୂରରୁ ଗୋଟାଏ ମସ୍ ମସ୍ ଶବ୍ଦ ଶୁଣାଗଲା । ବୋକା ଚାରିଆଡ଼କୁ ଆଖିତରାଟି ଚାହିଁଲା । ମାତ୍ର ଅନ୍ଧାରରେ କିଛି ଦିଶିଲା ନାହିଁ ।

ବେଳକୁ ବେଳ ଶବ୍ଦଟା ପାଖେଇ ଆସିଲା । "କିଏରେ ?" କିଛି ଉତ୍ତର ମିଳିଲାନି । ଶବ୍ଦଟି ଆହୁରି ପାଖେଇ ଆସିଲା । ଦେଖୁଁ ଦେଖୁଁ ସାଇଁ କରି ଗୁଳିଟେ ବାଜିଲା ତା' ମୁହଁରେ । ବୋକା ଚଟ୍‌କରି ହାତ ବଢ଼ାଇ ଦେଇ ଚଟ୍‌କରି କ'ଣ ଗୋଟାଏ ଜିନିଷ ଧରି ପକାଇଲା । ଏଁ, ଏଟା କ'ଣ ? ଗୋଟାଏ ଗୋରୁ ଲାଞ୍ଜପରି ତାକୁ ଲାଗିଲା ।

କଥା କ'ଣ କି ଶିବଙ୍କ ଷଣ୍ଢ କୈଳାସରୁ ଓହ୍ଲାଇ ଆସି ରଜାଙ୍କ କ୍ଷେତ ସବୁ ରାତିରେ ଖାଇଯାଏ । ମାତ୍ର ଆଜି ବୋକା ହାତରେ ତା' ଲାଞ୍ଜଟା ପଡ଼ିଗଲା । ବୋକା ଆଉ ନଛାଡ଼େ । ଷଣ୍ଢ ଏକା ଦୌଡ଼ିକି କ୍ଷେତମୁଣ୍ଡରେ ହାଜର । ବୋକା ସେମିତି ଲାଞ୍ଜଟା ଜାବୁଡ଼ି ଧରିଥାଏ । ହଠାତ୍ ଷଣ୍ଢଟା 'ସୁ' କରି ଉପରକୁ ଉଠିଗଲା । ବୋକାଟା ଲାଞ୍ଜକୁ ଧରି ଶୂନ୍ୟରେ ଝୁଲୁଥାଏ । ଏମିତି ଯାଉଯାଉ ଶିବଙ୍କ ଷଣ୍ଢ କୈଳାସରେ ଯାଇ ପହଞ୍ଚିଗଲା । ବୋକା ହଠାତ୍ ହାତଟା ଛାଡ଼ିଦେଇ ଶିବଙ୍କ ଆଗରେ ଦୁଲ୍‌କରି ଖସିପଡ଼ିଲା । ସଙ୍ଗେ ସଙ୍ଗେ ସେ ଝାଡ଼ିଝୁଡ଼ି ହୋଇ ଶିବଙ୍କ ଆଗରେ ଛିଡ଼ା ହୋଇଗଲା । ଶିବ ହୁଙ୍କାର କରି କହିଲେ, "କିଏରେ ତୁ ? ଏଠିକି କେମିତି ଆସିଲୁ ?"

ବୋକାର ରାଗ ତାଳୁକୁ ଉଠିଗଲା । ଷଣ୍ଢଟା ରଜାଙ୍କ ଫସଲ ଉଜାଡ଼ିଦେଲା । ପୁଣି କ'ଣ ନା ତାକୁ ଶୂନ୍ୟେ ଶୂନ୍ୟେ ଉଠାଇ ଆଣି ଗୋଟାଏ ଜଟିଆ ବାବାଜି ଆଗରେ କଚାଡ଼ିଦେଲା ।

"ଏ କ'ଣ ତୁମ ଷଣ୍ଢ ?" ଶିବ ଉତ୍ତର ଦେଲେ, "ହଁ ।"

ବୋକା ତେଜି ଉଠି କହିଲା, "ଦେଖ, ତୁମ୍ଭ ଷଣ୍ଢ ରଜାଙ୍କ ଫସଲ ଉଜାଡ଼ି ଦେଲା, ମୁଁ ତା' ଲାଞ୍ଜ ଧରିପକାଇବାରୁ ମତେ ଧରି ସେ 'ସୁ' କରି ଏଠିକି ଉଡ଼ିଆସିଲା ।"

ଏତିକି ବେଳକୁ ବୋକାଟା ଘର ଚତୁର ହୋଇଗଲାଣି । କାହିଁକି ନା ସେ ସ୍ୱର୍ଗକୁ ଆସିଥାଏ ।

ଶିବ ଗମ୍ଭୀର ହୋଇ କହିଲେ, "ଦେଖ, ତୁମକୁ ଏଥର ପୃଥିବୀକୁ ଫେରିଯିବାକୁ ପଡ଼ିବ। କୈଳାସରେ ମଣିଷ ରହିବା ପାଇଁ ହୁକୁମ ନାହିଁ।" ବୋକା ଶିବଙ୍କ ଦେହର ପାଉଁଶ ଓ ତାଙ୍କ ବାଘଛାଲ ଆସନକୁ ଦେଖି କହିଲା, "କାହିଁକି, ତୁମେ ଆଉ କଅଣ କି ?"

ଶିବ ଉତ୍ତର ଦେଲେ, "ମୁଁ ମଣିଷ ନୁହେଁ, ଦେବତା।"

ବୋକା ଟିକିଏ ଉଦ୍ଧତ ସ୍ୱରରେ କହିଲା, "ନା ନା, ମୁଁ ପୃଥିବୀକୁ ଲେଉଟିଯିବା କଥା ହେବନି। ଗଲେ ରଜା ମୋ ମୁଣ୍ଡକାଟି କରିଦେବେ। ମୁଁ ଏଠି ତୁମପରି ଦେବତା ହୋଇ ରହିବି।" ଶିବ ମୁଣ୍ଡହଲାଇ କହିଲେ, "ନା, ସେକଥା ହୋଇପାରିବ ନାହିଁ। ତୁମକୁ ଫେରିଯିବାକୁ ହେବ।"

ବୋକା କହିଲା, "ତେବେ ତୁମ ଷଣ୍ଢଟାକୁ ମୋତେ ଦିଅ। ମୁଁ ଯାକୁ ନେଇ ରଜାଙ୍କ ପାଖେ ହାଜର କରାଇବି।" ଶିବ କହିଲେ, "ନାହିଁ ବାବୁ, ସେକଥା ହୋଇପାରିବ ନାହିଁ। ମୋ ବାହନଟାକୁ ମୁଁ ଦେବି କିପରି ? ଆଉ ଯାହା ମାଗୁଛ ମାଗ।"

ବୋକା ଟିକିଏ ବିଗିଡ଼ି କହିଲା, "ଆଚ୍ଛା, ତା' ହେଲେ ମୋତେ ମୁଠାଏ କୁହୁକ ରତ୍ନ ଦିଅ, ତାକୁ ବୁଣିଲେ ଗଛରେ ଯେମିତି ଖାଲି ମାଳ ମାଳ ରତ୍ନ ଫଳିବ।"

ଶିବ 'ତଥାସ୍ତୁ' କହି ବୋକା ହାତରେ ଆଞ୍ଜୁଳାଏ କୁହୁକରତ୍ନ ଅଜାଡ଼ିଦେଲେ। ବୋକା ସେ ରତ୍ନକୁ ଗାମୁଛାକାନିରେ ବାନ୍ଧି ଷଣ୍ଢର ଲାଞ୍ଜ ଧରି ପୃଥିବୀ ଉପରକୁ ଓହ୍ଲାଇପଡ଼ିଲା। ରଜାଙ୍କ ଜମିକୁ ଲାଗି ତା' ନିଜର ଖଣ୍ଡିଏ ଶ୍ରେଷ୍ଠ ଜମି ଥାଏ। ସେ ଗାମୁଛାକାନି ଫିଟାଇ ସଙ୍ଗେ ସଙ୍ଗେ ରତ୍ନଗୁଡ଼ାକ ବୁଣିଦେଲା। ରଜା ସକାଳୁ ଉଠି ଦେଖିଲେ ଯେଉଁ କଥାକୁ ସେଇକଥା। ତାଙ୍କ କ୍ଷେତ ଯେପରି ଉଜୁଡ଼ିଯାଇଛି, ମାତ୍ର ତାଙ୍କ କ୍ଷେତ ଆରପାଖକୁ ଚାହିଁଲାବେଳକୁ ତାଙ୍କ ଆଖି ଖୋସିହୋଇଗଲା। ଏ କ'ଣ ? ନୂଆ ଗଛଗୁଡ଼ାଏ କେମିତି ଉଠିଯାଇଛି। ସବୁ ଗଛରେ ମାଳ ମାଳ ରତ୍ନ ଓହଳିଛି। ଓଃ, ସେ ରତ୍ନର କି ତେଜ !

ରାଜା ସଙ୍ଗେ ସଙ୍ଗେ ବୋକାକୁ ଡାକଲେ । ମାତ୍ର ବୋକା କ'ଣ ସେପରି ଅଛି ? ଏହା ଭିତରେ ସେ ଭାରି ବୁଲାଖ୍ ହୋଇଯାଇଛି । ସେ ତା'ର ସ୍ୱର୍ଗଯାତ୍ରା ବିଷୟରେ ଲୋକଙ୍କ ଆଗରେ ରାଜାଙ୍କୁ ଠିକ୍ ଠିକ୍ ସବୁ କହିଗଲା । ରାଜା, ମନ୍ତ୍ରୀ, କଟୁଆଳ ଓ ରାଜଧାନୀର ସମସ୍ତେ ବୋକାର କଥାଗୁଡ଼ିକ ଶୁଣି ଅବାକ୍ ହୋଇଗଲେ ।

ସେଦିନ ସନ୍ଧ୍ୟାରେ ରାଜା, ମନ୍ତ୍ରୀ, କଟୁଆଳ ଆଦି ସମସ୍ତେ ରାଜାଙ୍କ କ୍ଷେତରେ ଜମାହେଲେ । ସମସ୍ତେ ଚୁପ୍‌ଚାପ୍ ଅନ୍ଧାରରେ ଛପି-ରହିଥାନ୍ତି । ରାତିଅଧ ବେଳକୁ ସେମିତି ମସ୍‌ମସ୍ ଶବ୍ଦ ଶୁଣାଗଲା । ରାଜା ସମସ୍ତଙ୍କୁ ସତର୍କ କରିଦେଲେ । ଶବ୍ଦଟା କ୍ରମେ ପାଖେଇ ଆସିଲା । ଆଗ ରାଜାଙ୍କ ଦେହରେ ଷଣ୍ଢର ଲାଞ୍ଜଟା ଯେମିତି ଘ୍ରଷିହୋଇଯାଇଛି, ରାଜା ଚଟ୍‌କରି ଲାଞ୍ଜଟା ଧରିନେଲେ । ତାଙ୍କୁ ଧରି ଷଣ୍ଢ ଉପରକୁ ଉଠିଲା-ବେଳକୁ ମନ୍ତ୍ରୀ ରାଜାଙ୍କ ପାଦ ଦୁଇଟାକୁ ଜାବୁଡ଼ି ଧରିଲେ । ମନ୍ତ୍ରୀଙ୍କ ପଛକୁ କଟୁଆଳ, ତାଙ୍କ ପଛକୁ ଆଉ କିଏ, ଏମିତି ରାଜଧାନୀର ସମସ୍ତେ ପାଦ ଧରାଧରି ହୋଇ ଆକାଶକୁ ଉଠିଲେ । ଅଧାବାଟରେ ରାଜା ଚିତ୍କାର କଲେ, "ମନ୍ତ୍ରୀ, ଗଲା ଗଲା ମୋ' ହାତ ।" ମନ୍ତ୍ରୀ ପାଟିକଲେ, "ନା ନା ମଣିମା, ହାତ ଖସାନ୍ତୁ ନାହିଁ । ତା'ହେଲେ କୁହୁକରନ୍ତୁ ଆମ ହାତରୁ ଖସିଯିବ ।"

ରାଜା ପୁଣି ନିଜକୁ ସମ୍ଭାଳି ନେଲେ । ପ୍ରାଣବିକଳରେ ଲାଞ୍ଜଟାକୁ ଭିଡ଼ିଧରି ରହିଗଲେ । ଶେଷରେ ଯାଇ ଷଣ୍ଢ ଯେମିତି କୈଳାସରେ ପହଞ୍ଚିଛି, ସମସ୍ତେ ଶିବଙ୍କ ଆଗରେ ଦୁଲ୍‌ଦାଲ୍ କରିଗଡ଼ି ହୋଇ ପଡ଼ିଗଲେ । ଓହୋ ! ରକ୍ଷା ହୋଇଗଲା ।

ଶିବ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ପାଟିକରି ଉଠିଲେ, "ଆରେ, ଆରେ, ଏ କ'ଣ ? ଏତେଗୁଡ଼ାଏ ମଣିଷ କେମିତି ଏଠାକୁ ଚାଲିଆସିଲେ ?"

ନନ୍ଦି ମୁଣ୍ଡନୁଆଁଇ କହିଲା, "ମହାପ୍ରଭୁ, ଏ ହେଉଛନ୍ତି ରାଜା, ତାଙ୍କ ପଛକୁ ଅଛନ୍ତି ମନ୍ତ୍ରୀ, ଆଉ ତାଙ୍କ ରାଜଧାନୀର ପ୍ରଜାଗଣ ।"

ଶିବ ଚଢ଼ଉଠି କହିଲେ, "ଆରେ, ତୁମେ ସବୁ ମୋ କୈଳାସକୁ ଆସିଲ କାହିଁକି ? ପୃଥିବୀରେ କ'ଣ ତୁମର କିଛି କାମ ନାହିଁ ?"

ଏହା ଶୁଣି ରଜା ମନ୍ତ୍ରୀଙ୍କୁ, ମନ୍ତ୍ରୀ କୋତୁଆଳଙ୍କୁ, କୋତୁଆଳ ଆଉ କାହାକୁ, ଏମିତି ଜଣେ ଅନ୍ୟ ଜଣକ ମୁହଁକୁ ଚାହିଁଲେ । କାହାରି ପାଟିରୁ କଥା ପଦେ ବି ବାହାରିଲା ନାହିଁ । ଶେଷରେ ରଜା ଗଳା ସଫାକରି ଥରି ଥରି କହିଲେ, "ମହାପ୍ରଭୁ, ଆମେ ଶୁଣିଲୁ ଆପଣ କୁହୁକରତ୍ନ ବାଣ୍ଟୁଛନ୍ତି । ଆମ ରାଜ୍ୟର ସବୁଠୁ ବୋକା ଲୋକଟା ଏଇଠୁ ମୁଠାଏ ରତ୍ନ ନେଇ ତା' କ୍ଷେତଯାକ ରତ୍ନ ଫଳାଇଛି ।"

ଶିବ କହିଲେ, "ଓହୋ, ତାହାହେଲେ କୁହୁକରତ୍ନ ଲାଗି ତୁମେ ରାଜ୍ୟଟାଯାକର ଲୋକ ଏଠିକି ଉଠିଆସିଛ ? ନା, ସେ ରତ୍ନ କାହାରିକି ମିଳିବ ନାହିଁ । ତୁମେ ସେ ରତ୍ନ ପାଇଲେ ନିଜ ରାଜ୍ୟକୁ ଫେରି ପୃଥିବୀ-ସାରା ଏ କଥା ପ୍ରଚାର କରିଦେବ । ଶେଷରେ ପୃଥିବୀଟା ଯାକର ଲୋକ ସ୍ୱର୍ଗକୁ ଉଠିଆସି ମୋତେ କୁହୁକରତ୍ନ ମାଗିବେ । ତା' ହେଲେ ମୁଁ ଯିବି କୁଆଡ଼େ ? ନା, ସେ କଥା ହୋଇପାରିବନି ।"

ରଜା ମୁହଁ ଶୁଖାଇ କହିଲେ, "ପ୍ରଭୁ, ଟିକିଏ ଦୟା ହେଉ । ଆମେସବୁ ଏତେ ବାଟ ଆପଣଙ୍କ ଷଣ୍ଢ ଲାଞ୍ଜ ଧରି ଆସିଛୁ । ଆମ ପରିଶ୍ରମ କ'ଣ ବୃଥା ହେବ ? ଦେଖୁନାହାନ୍ତି, ମୋ' ହାତ କପରି ଫୋଟକା ହୋଇଯାଇଛି ? ଆମେ ରତ୍ନ ନେଲେ କାହାକୁ ଏ କଥା କହିବୁନି ।" ଶିବଙ୍କର ଟିକିଏ ଦୟାହେଲା । ସମସ୍ତଙ୍କୁ ଚାହିଁ କହିଲେ, "ଆଚ୍ଛା, ତେବେ ଗୋଟିଏ କଥା ଶୁଣ, ମୁଁ ତୁମ ପ୍ରତ୍ୟେକଙ୍କୁ ମୁଠାଏ ଲେଖାଏଁ ରତ୍ନ ଦେବି, ମାତ୍ର ତୁମେ କେହି ଆଉ ପୃଥିବୀକୁ ଫେରିବନି । ମୁଠାଏ ଲେଖାଏଁ ରତ୍ନ ଧରି ତାରା ହୋଇ ମହାଶୂନ୍ୟରେ ଘୂରିବୁଲିବ । ରଜା ସବୁଠାରୁ ମୋଟା ଆଉ ଗୋଲକାର ଦିଶୁଛନ୍ତି, ସେ ହେବେ ଚନ୍ଦ୍ର ।"

ଶିବଙ୍କ କଥା ଶୁଣି ସମସ୍ତଙ୍କର ହୃଦୟ ଶୁଖିଗଲା । ସମସ୍ତଙ୍କ ଆଖିରୁ ଲୁହ ଧାର ଧାର ବୋହିଲା । ଶିବଙ୍କ ହୃଦୟ ତରଳିଗଲା । ସେ କହିଲେ, "ଦେଖ, ମନଦୁଃଖ କରନି । ତୁମ୍ଭମାନଙ୍କୁ ସବୁଦିନେ ଏମିତି ଏକା ଏକା ମହାଶୂନ୍ୟରେ ଘୂରିବୁଲିବାକୁ ପଡ଼ିବନି । ତୁମମାନଙ୍କ ଆଲୁଅ

ଦେଖି, ପୃଥିବୀର ଲୋକ ଦିନେ ନା ଦିନେ ରକେଟ୍, ମହାକାଶଯାନ ଆଦି ପଠାଇ ତୁମ ପାଖକୁ ଆସିବାକୁ ଚେଷ୍ଟା କରିବେ । ଆଗ ଆଗ ସେମାନେ ପାରିବେନି । ମାତ୍ର ଦିନେ ସେମାନଙ୍କ ଚେଷ୍ଟା ନିଶ୍ଚୟ ସଫଳ ହେବ । ସେ ପର୍ଯ୍ୟନ୍ତ ଅପେକ୍ଷା କର ।" ଏହା କହି ଶିବ ପ୍ରତ୍ୟେକଙ୍କୁ ମୁଠାଏ ଲେଖାଏଁ ରତ୍ନ ଦେଇ ସେମାନଙ୍କୁ ମହାଶୂନ୍ୟକୁ ଫିଙ୍ଗିଦେଲେ । ସଙ୍ଗେ ସଙ୍ଗେ ରାଜା ଚନ୍ଦ୍ର ହୋଇ ଅନ୍ୟମାନେ ଶ୍ରେଷ୍ଠ ବଡ଼ ଅସଂଖ୍ୟ ତାରା ହୋଇ ଆକାଶରେ ଘୂରିବୁଲିଲେ ।



# ଅମୁ ଓ ରୋହି ମାଛ



ଗୋଟିଏ ଗାଁରେ ତିନିଭାଇ ଥା'ନ୍ତି । ବଡ଼ ଦୁଇଭାଇ ଭାରି କାମିକା । ସବୁଦିନ ସେ ଦୁହେଁ କାମ କରିବାକୁ ବାହାରିଯା'ନ୍ତି, ଆଉ ଘରେ ଥା'ନ୍ତି ସାନଭାଇ ଅମୁ ଓ ତା'ର ଦୁଇ ଭାଉଜ । ଅମୁଟା ଗୋଟାଏ କୁମ୍ଭକର୍ଣ୍ଣ । ପେଟେ ଖାଏ ଓ ଦିନରାତି ଖଟ ଉପରେ ପଡ଼ିରହି ଘୁଙ୍ଗୁଡ଼ି ମାରୁଥାଏ ।

ଭଲ ଜିନିଷ ଖାଇବାରେ ଅମୁର ଯିମିତି ସଉକ, ସୁଆଦ ଅସୁଆଦ ବାରିବାରେ ତା'ର ସିମିତି ନାଁ । ଆଗ ଅମୁକୁ ରନ୍ଧଣାଟା ଚାଖିବାକୁ ନଦେଲେ ଭାଉଜମାନଙ୍କର ମନ ବୁଝେ ନାହିଁ ।

ଦିନେ ବଡ଼ ଦୁଇଭାଇ ହାଟକୁ ଯାଇଥାନ୍ତି । ଭାଉଜମାନେ ଖିରି କରିବାକୁ ବସିଲେ । ଖିରିରେ ଅମୁର ଭାରି ସଉକ । ବଡ଼ଭାଉଜ ଅମୁକୁ ନିଦରୁ ଉଠାଇ କହିଲା, "ଅମୁ, ଗାଁ ମୁଣ୍ଡ ନଈରୁ ପାଣି ଦି'ମାଠିଆ ଆଣିବୁନି ? ପାଣି ସରିଗଲାଣି ।" ଅମୁ ଆଖି ମଳି ମଳି କହିଲା, "ନା, ମୁଁ ପାରିବିନି । ତୁମେ ଦି'ଟା ଆଉ କାହିଁକି ଅଛ ?" ଭାଉଜ ହସି ହସି କହିଲା, "ବେଶ୍, ତେବେ ଖିରି ଖାଇବାକୁ ମନ କରିବ ନାହିଁ ।"

ଖିରି ନାଁ ଶୁଣି ଅମୁ ଧଡ଼୍‌ପଡ଼ ହୋଇ ଉଠିଲା । ଦୁଇହାତରେ ଦୁଇଟା ମାଠିଆ ଧରି ନଈଆଡ଼କୁ ଦୌଡ଼ିଲା ।

ଗୋଟିଏ ମାଠିଆରେ ପାଣି ଭର୍ତ୍ତିକରି ଅମୁ ଆର ମାଠିଆଟି ପାଣିରେ ବୁଡ଼ାଉଛି, ଦେଖିଲା ଗୋଟାଏ ବଡ଼ ରୋହିମାଛ ପାଣି ଭିତରୁ ଡେଇଁପଡ଼ି ଶୁଖିଲାରେ ଛଟପଟ ହେଉଛି । ଅମୁ ଖପ୍‌କରି ମାଛଟାକୁ ମାଡ଼ିବସିଲା । ମାଛଟା ଚିତ୍କାର କରିଉଠିଲା, "ମତେ ମାରନି ଅମୁ, ପାଣିରେ ଛାଡ଼ିଦିଅ । ମୁଁ ତୁମର ବହୁତ ଉପକାର କରିବି । ଯେତେବେଳେ ମତେ ଯାହା କହିବ କରିଦେବି ।"

ଆରେ, ଏ କ'ଣ ? ମାଛଟା କଥା କହୁଛି ! ସେ ପୁଣି ଅମୁର ନାଁ ଜାଣିଲା କିମିତି ? ଅମୁ ଅବିଶ୍ୱାସ କରି କହିଲା, "ହଁ, ତୁର ଗୋଟାଏ ରୋହିମାଛ, କହୁଛୁ କ'ଣ ନା ମୋର ଉପକାର କରିବୁ ! ଆଚ୍ଛା, ଏହିକ୍ଷଣି ତୋର କରାମତି ଦେଖା ତ ! ତତେ ଛାଡ଼ିଦେବି ।"

ମାଛ କହିଲା, "ତେବେ କ'ଣ କରିବି କହ ।" ଅମୁ ଟିକିଏ ଭାବିକରି କହିଲା, "ମୋ ପାଣିମାଠିଆ ଦି'ଟା ଶୂନ୍ୟେ ଶୂନ୍ୟେ ଆମ ଘରକୁ ନେଇଯା ।" ସତକୁସତ ଅମୁର କଥା ନସରୁଣୁ ମାଠିଆ ଦୁଇଟା ସର୍-କରି ଖସିଯାଇ ଦାଣ୍ଡେ ଦାଣ୍ଡେ ଅମୁ ଘରଆଡ଼େ ଚାଲିଲା । ଗାଁ ଲୋକେ ଏ ଦୃଶ୍ୟ ଦେଖି ଆଁ କରି ଚାହିଁରହିଥା'ନ୍ତି । ଦେଖୁ ଦେଖୁ ମାଠିଆ ଦୁଇଟା ଅମୁ ଘରେ ପଶି ହାଣ୍ଡିଶାଳେ ଥୁଆ ହୋଇଗଲା । ଅମୁର ଆନନ୍ଦ ଦେଖେ କିଏ ? କାହାକୁ କିଛି ନକହି ସେ ଯାଇ ତା' ଖଟ ଉପରେ ଘୋଡ଼ାଇ ହୋଇ ଶୋଇପଡ଼ିଲା ।

ଘଡ଼ିକ ପରେ ଆଉ ଭଉଜ ଆସି କହିଲା, "ଉଠ ଅମୃ, କାଠ ଦି'ଖଣ୍ଡ ଚିରିଦିଅ । କାଠ ନହେଲେ କିଛି ନହୁଏ ।"

ଅମୃ କରିଲେଉଣ୍ଠାଇ ଅଳସ ଭଙ୍ଗୁ ଭଙ୍ଗୁ କହିଲା, "ଓଃ ଟିକିଏ ଶୁଆଇ ଦେବନି ତମେ ମଣିଷକୁ । ଆଚ୍ଛା, ହଉ ତେବେ ।" ଭଉଜ ଚାଲିଯିବା ପରେ ଅମୃ ଶେଯରେ ପଡ଼ିରହି ଗୁଣୁଗୁଣୁ ହୋଇ କହିଲା, "ବୋହିମାଛ, କାଠତକ ଚିରାହୋଇ ହାଣ୍ଡିଶାଳକୁ ଆସୁ ।" ତା' କଥା ସତ ହେଲା । କ୍ଷଣକ ଭିତରେ କାଠ ଚିରାହୋଇ ହାଣ୍ଡିଶାଳ ଦୁଆରେ ଥାକ ହୋଇ ଥୁଆ ହୋଇଗଲା ।

ଆଉ ଦିନେ ବଡ଼ଭଉଜ କହିଲା, "ଅମୃ, ବଣକୁ ଯାଇ କାଠ ଶଗଡ଼େ ଆଣନ୍ତନି ? କାଠ ନଆସିଲେ ଚୁଲି ଲାଗିବ କେମିତି ?" ଅମୃ ପାଟି କରି କହିଲା, "ସବୁ ତ ଅମୃ କରିବ, ତୁମେ ଦି'ଟା ଘରେ ରହିବ କାହିଁକି ?" ଭଉଜ ହସି ହସି ଉତ୍ତର ଦେଲା, "ମଲା, ତୁମେ ଥାଉ ଥାଉ ଆମେ ମାଇପି ଦି'ଟା ବଣରୁ କାଠ ଆଣିବୁ ନା କ'ଣ ?"

ଅମୃ ଖଟ ଉପରୁ ତଳକୁ ଡେଇଁପଡ଼ି ଶଗଡ଼ ଉପରେ ଯାଇ ବସିପଡ଼ିଲା । ଭଉଜକୁ କହିଲା, "ଖୋଲ ଫାଟି, ଶଗଡ଼ ଚାଲିବ ।" ଭଉଜ କହିଲା, "ଆରେ, ଶଗଡ଼ଟା ଆପେ ଆପେ ଚାଲିବ ନା କ'ଣ ? ବଳଦ କାହାନ୍ତି ?" ଅମୃ ଉତ୍ତର ଦେଲା, 'ବଳଦ ନଥାନ୍ତୁ, ଶଗଡ଼ ସିମିତି ଚାଲିବ ।" ଭଉଜ ଫାଟି ଫିଟାଇଦେଲା । ଅମୃ ମନେ ମନେ କହିଲା, "ବୋହିମାଛ ମୁଁ ଯାହା ବାଛୁରୁଛି କରିଦେ ।"

ହାତରେ ଖଣ୍ଡେ ଦଉଡ଼ି ଆଉ କୁରାଢ଼ିଟା ଧରି ଅମୃ ଶଗଡ଼ ଉପରେ ବସିଥାଏ । ସତକୁସତ ଶଗଡ଼ଟା ଘଡ଼୍‌ଘଡ଼୍ ହୋଇ ଚାଲିଲା । ଭଉଜ ଥକ୍‌କା ହୋଇ ଚାହିଁଥାଏ । ଦେଖୁ ଦେଖୁ ଶଗଡ଼ଟା ଗାଁ ସୀମା ପାର ହୋଇ ସହର ଭିତରେ ବିଜୁଳି ବେଗରେ ଛୁଟିଲା । ଲୋକେ ପାଟି କରୁଥାନ୍ତି, "ଧର, ଧର, ଶଗଡ଼ଟାକୁ ଧର ।" ହେଲେ ଶଗଡ଼ଟା ଅଟକାଉଛି କିଏ ?

ଶଗଡ଼ ସହର ପାର ହୋଇ ବଣ ଆଡ଼କୁ ଚାଲିଲା । ବଣ ଭିତରେ ପଶି ଅମୃ ପାଟିକରି କହିଲା, "ବୋହିମାଛ, କୁରାଢ଼ିରେ ଶୁଖିଲାକାଠ

ହାଣି ଶଗଡ଼ ଉପରେ ଜମାଇଦେ ।" ଚାହୁଁ ଚାହୁଁ କାଠ କଟା ହୋଇଗଲା ଓ ବଡ଼ା ବଡ଼ା ହୋଇ ଶଗଡ଼ ଉପରେ ବନ୍ଧା ହୋଇ ଥୁଆ ହୋଇଗଲା । ଅମୁର କଥାରେ କୁରାଢ଼ି ଲମ୍ବା ଚାଟଟାଏ ହାଣି ତା' ହାତରେ ଧରାଇଦେଲା । ଶଗଡ଼ ଏଥର ଲେଉଟାଣି ଅମୁ ଘରଆଡ଼କୁ ଚାଲିଲା ।

ଦେଖୁ ଦେଖୁ ଶଗଡ଼ଟା ପବନ ପରି ଉଡ଼ିଲା । ସହର ଭିତରେ ମାଡ଼ ଚାଲିଲା ବେଳକୁ ବାଟରେ ଯାହା ପଡ଼ିଲା ଭାଙ୍ଗି ରୁଜ ଗଲା । ଲୋକେ ଶଗଡ଼ ଧକ୍କାରେ ଖଣ୍ଡିଆ ଖାବରା ହୋଇଗଲେ । ଶହ ଶହ ଲୋକ "ଧର, ଧର, ଶଗଡ଼ଆଟାକୁ ଧର" ବୋଲି ଚିତ୍କାର କଲାରୁ ଅମୁ ହାତରେ ଚାଟଟା ରାସ୍ତାର ଦୁଇପାଖରେ ଜମା ହୋଇଥିବା ଲୋକମାନଙ୍କୁ ପିଟି ପିଟି ଘଉଡ଼ାଇ ଦେଲା । ଲୋକେ "ମା'ଲୋ, ବାପଲୋ" ପାଟିକରି ପ୍ରାଣ ବିକଳରେ ଘର ଭିତରେ ପଶିଲେ । ଶଗଡ଼ ସୁରୁଖୁରୁରେ ଯାଇ ଅମୁ ଘର ବାଡ଼ରେ ଛିଡ଼ା ହୋଇଗଲା ।

ରାଜ୍ୟସାରା ହାଲହୋଲ ପଡ଼ିଗଲା । ରାଜାଙ୍କ କାନରେ ଏକଥା ପଡ଼ିଲା । ଅମୁକୁ ନଅରକୁ ଧରି ନେବାପାଇଁ ରାଜାଙ୍କ ଲୋକେ ଅମୁ ଘରେ ପଶିଲେ । ସେମାନଙ୍କୁ ଦେଖି ଅମୁ ତା ଚାଟ ଚଳାଇଲା । ଚାଟ ରାଜାଙ୍କ ଲୋକଙ୍କୁ ପିଟି ପିଟି ଆଣି ନଅର ଆଗରେ ପହଞ୍ଚାଇ ଦେଲା । ଏ ଘଟଣା ଦେଖି ରାଜା ରାଗରେ ନିଆଁ । ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ଡକାଇ ହୁକୁମ୍ ଦେଲେ, "ସେ ସଇତାନ ଅମୁଟାକୁ ଆଜ ସନ୍ଧ୍ୟା ସୁଦ୍ଧା ମୋ ପାଖରେ ହାଜର କରାଅ । ନହେଲେ ତୁମର ମୁଣ୍ଡକାଟ ହେବ ।"

ମନ୍ତ୍ରୀ ତ ଚାଲାଖ ଲୋକ । ଜୋର୍ ଜବରଦସ୍ତିରେ କଛୁ ଫଳ ନାହିଁ ଭାବି କଳକୌଶଳରେ ଅମୁକୁ ହାତ କରିବାକୁ ବସିଲେ । ସେ ଅମୁର ଭାଉଜମାନଙ୍କ ପାଖକୁ ଅନେକ ବହୁମୂଲ୍ୟ ଉପହାର ପଠାଇଲେ । ସେମାନଙ୍କ ସାହାଯ୍ୟରେ ମନ୍ତ୍ରୀ ଅମୁକୁ ଖୁଆଇ ପିଆଇ ଭଲ ପୋଷାକ ପିନ୍ଧାଇ ରାଜାଙ୍କ ନଅରକୁ ଯିବାକୁ ତାକୁ ରାଜ କରାଇଦେଲେ । ଅମୁ ମନ୍ତ୍ରୀଙ୍କୁ କହିଲା, "ତମେ ଆଗରେ ଯାଅ, ମୁଁ ତମ ପଛେ ପଛେ ରାଜାଙ୍କ ନଅରକୁ ଯାଉଛି ।"

ମନ୍ତ୍ରୀ ଫେରିବା ପରେ ଖଟ ଉପରେ ବସି ଅମ୍ବୁ କହିଲା, "ରୋହିମାଛ, ଖଟ ସହିତ ମୋତେ ରଜାଙ୍କ ନଅରକୁ ନେଇଯା ।" ସଙ୍ଗେ ସଙ୍ଗେ ଖଟ ବାହାରକୁ ଉଡ଼ିଗଲା । ମୁହୂର୍ତ୍ତକ ଭିତରେ ଅମ୍ବୁ ଖଟ ଉପରେ ବସି ରଜାଙ୍କ ଆଗରେ ହାଜର ।

ରଜା ତାକୁ ଦେଖି ରାଗରେ ତମତମ ହୋଇ କହିଲେ, "ବଦମାସ୍, ତୁ ମୋ ପ୍ରଜାମାନଙ୍କୁ ପିଟିଲୁ କାହିଁକି ?" ଅମ୍ବୁ ଚଡ଼ାସ୍ୱରରେ ଉତ୍ତର ଦେଲା, "ସେମାନେ ମୋ ବାଟ ଓଗାଳିଲେ କାହିଁକି ?"

ଏତିକିବେଳେ ରାଜକୁମାରୀ ଅନ୍ତଃପୁର ଭିତରୁ ଝରକା ବାଟେ ଅମ୍ବୁକୁ ଲକ୍ଷ୍ୟ କରୁଥିଲେ । ସେ ମନେ ମନେ ଭାବିଲେ, "ବାପା ଏ ଲୋକଟାକୁ ଜ୍ୱାଇଁ କରନ୍ତେ କି ।"

ରଜାଙ୍କ କଥାକୁ କାନ ନଦେଇ ଅମ୍ବୁ ଯେମିତି ଆସିଥିଲା ଖଟ ଉପରେ ବସି ସେମିତି ଫେରିଗଲା । ରାଜକୁମାରୀଙ୍କ ମନ ତ ଲାଗିଯାଇଛି । କାନ୍ଦି କାନ୍ଦି ସେ ରାଣୀଙ୍କୁ ତାଙ୍କ ମନକଥା ଜଣାଇଲେ । ରାଜକୁମାରୀଙ୍କ ଇଚ୍ଛା ଶୁଣି ରଜା ରାଗରେ ପାଚିଗଲେ । ଅମ୍ବୁକୁ ବାନ୍ଧି ଆଣିବାକୁ ସେ ମନ୍ତ୍ରୀଙ୍କୁ ଆଦେଶ ଦେଲେ । ଏଥର ମନ୍ତ୍ରୀ ଅମ୍ବୁକୁ ଭଲ ଭଲ ଜିନିଷ ଖାଇବାକୁ ଦେଲେ, ନିଶା ଖୁଆଇ ତାକୁ ବେହୋସ କରାଇଦେଲେ । ରାଜାଙ୍କ ଲୋକେ ଅମ୍ବୁକୁ ବାନ୍ଧି ପକାଇ ରାଜାଙ୍କ ପାଖରେ ହାଜର କରାଇ ଦେଲେ ।

ରାଜା ତ ରାଗରେ ଜଳୁଛନ୍ତି । ରାଜକୁମାରୀଙ୍କୁ ଧରି ଆଣି ସେ ତାଙ୍କୁ ଅମ୍ବୁ ସାଙ୍ଗରେ ଗୋଟିଏ ସିନ୍ଦୁକ ଭିତରେ ପୂରାଇ ସମୁଦ୍ରରେ ଭସାଇଦେଲେ । ସିନ୍ଦୁକଟି ସମୁଦ୍ର ପାଣିରେ ଗଡେଇ ଗଡେଇ ହେଉଥିଲା ବେଳେ ଅମ୍ବୁର ଚେତା ଆସିଗଲା । ସେ ଜାଣିପାରିଲା ରାଜକୁମାରୀ ସଙ୍ଗେ ସିନ୍ଦୁକ ଭିତରେ ବନ୍ଦ ହୋଇ ସେ ସମୁଦ୍ର ଭିତରେ ପଡ଼ିଛି । ଏତିକିବେଳେ ତା'ର ରୋହିମାଛ କଥା ମନେପଡ଼ିଗଲା । ସେ ମନେ ମନେ କହିଲା, "ରୋହିମାଛ, ଆମ ସିନ୍ଦୁକକୁ କୂଳରେ ଲଗାଇ ଦେ ।"

ହଠାତ୍ ସମୁଦ୍ରର ଜୁଆର କୂଳକୁ ଲେଉଟିଲା । ସିନ୍ଦୁକଟି ଗଡ଼ି ଗଡ଼ି ଯାଇ ରାଜାଙ୍କ ବଗିଚା କଡ଼ରେ ଲାଗିଲା । ଅମ୍ବୁ ଆଉ ରାଜକୁମାରୀ ସିନ୍ଦୁକ ଖୋଲି ବାହାରି ପଡ଼ିଲେ । ରାଜକୁମାରୀ କହିଲେ, "ମୁଁ ଆଉ ବାପାଙ୍କ ନଅରକୁ ଫେରିବିନି । ତମେ ଆମ ପାଇଁ ଅଲଗା ନଅରଟିଏ ତୋଳାଇ ଦିଅ ।"

ଅମ୍ବୁ ରୋହିମାଛକୁ ସୁମରିବା ମାତ୍ରେ ଆଖି ପିଛୁଳାକେ ସେଇଠି ଦିବ୍ୟସୁନ୍ଦର ଶଙ୍ଖ ମଲମଲ ପଥରର ଉଆସଟିଏ ଠିଆ ହୋଇଗଲା । ଉଆସ ଉପରେ ସୁନାର ଗୁମ୍ଟ ଦୂରରୁ ଝଟକି ଉଠିଲା ।

ତହିଁ ଆରଦିନ ସକାଳୁ ଉଠି ରାଜା ବଗିଚାକୁ ବୁଲି ବାହାରିଲେ । ଏ କ'ଣ ? ତାଙ୍କ ଆଖି ଆଗରେ ଏକ ଅପୂର୍ବ ସୁନ୍ଦର ନଅର ସକାଳ ସୂର୍ଯ୍ୟର ସୁନେଲି କିରଣରେ ଝଲମଲ ଦେଖାଯାଉଛି । ରାଜା ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ନଅର ଭିତରେ ପଶି ଦେଖିଲେ ଲୋକବାକ, ଦାସଦାସୀ ପୂରି ରହିଛନ୍ତି । ଅମ୍ବୁ, ସେଇ ସଇତାନ ଅମ୍ବୁ, ଏକ ସୁନା ପଲଙ୍କରେ ଶୋଇଛି, ଆଉ ପାଖରେ ବସିଛନ୍ତି ରାଜାଙ୍କ ଅଲିଅଳ ଜେମା ନିଜେ । ନାନା ଅମୂଲ୍ୟ ଅଳଙ୍କାରରେ ଜେମାଙ୍କ କଅଁଳ ରୂପଟି ଝଲସି ଉଠୁଛି ।

ରାଜାଙ୍କ ରାଗ ତାଳୁକୁ ଉଠିଗଲା । ସେ ଅମ୍ବୁକୁ ଲକ୍ଷ୍ୟ କରି ପାଟି କରି ଉଠିଲେ, "ବଦମାସ୍, ନିକଲ୍ ଏଇଠୁ ।" ରାଜାଙ୍କ କଥା ଶୁଣି ଅମ୍ବୁ ହସି ହସି କହିଲା, "ଦେଖ ରାଜା, ମୁଁ ଏଇ ମୁହୂର୍ତ୍ତରେ ତୁମ ନଅର, ତୁମ ରାଜ୍ୟ ଆଉ ପ୍ରଜା ସମସ୍ତଙ୍କୁ ପୋଡ଼ିଜାଳି ପାଉଁଶ କରିଦେଇ ପାରେ, ମାତ୍ର ରାଜକୁମାରୀ ମତେ ବାଧା ଦେଉଛନ୍ତି ।"

ରାଜାଙ୍କ ରାଗ ଖସି ଆସିଲା । ତାଙ୍କ ମନରେ ଛନକା ପଶିଗଲା । ରାଜା ରାଜକୁମାରୀ ଆଉ ରାଜସିଂହାସନ ଅମ୍ବୁ ହାତରେ ସମର୍ପି ଦେଇ ବିଶ୍ରାମ ନେବାକୁ ସ୍ଥିର କଲେ ।

ଜେମାଙ୍କ ବାହାଘରର ଆୟୋଜନ ହୋଇଗଲା । ରାଜ୍ୟସାରା ସମସ୍ତେ ଆନନ୍ଦ ଉତ୍ସବରେ ମାତିଲେ । ଅମୁର ଭାଇ-ଭାଉଜ ରାଜାଙ୍କ ନିମନ୍ତ୍ରଣ ପାଇ ନଅରକୁ ଆସିଲେ । ରାଜଧାନୀରେ ଖିଆପିଆର ଧୂମ୍ ଚାଲିଲା । ଝିଅଜ୍ୱାଇଁ ରାଜ୍ୟ ପାଇ ମହାସୁଖରେ ରହିଲେ । ମୁଁ ଗଲାରୁ ମଟେ କଥା ପଦେ ବି କହିଲେନି ।



# ଗଧିଆର ଭୋଜି ଖିଆ



ଗୋଟିଏ ବଣରେ ଗଧିଆଟିଏ ଏକା ରହୁଥାଏ । ଏକୁଟିଆ ଥିବାରୁ ବେଳେ ବେଳେ ଶିକାର ନ ପାଇଲେ ତାକୁ ଉପାସ ରହିବାକୁ ପଡ଼େ । ଥରେ ସେ ସ୍ୱପ୍ନ ଦେଖିଲା ଗୋଟିଏ ବଡ଼ିଆ ଭୋଜ ତାକୁ ମିଳୁଛି । ଗଧିଆ ତ କେତେ ଦିନରୁ ଭୋକିଲା ଥିଲା; ଏବେ ସ୍ୱପ୍ନରେ କେତେଗୁଡ଼ିଏ ଭଲ ଜିନିଷ ଦେଖି ଲୋଭରେ ପ୍ରଥମ ପୂଳାକ ପାଟିରେ ଧରିବାକୁ ଯାଉଛି, ଖୁଉଁ-କରି ତା' ନିଦ ଭାଙ୍ଗିଗଲା ।

ନିଦଟା ଭାଙ୍ଗିଗଲା ସିନା ବାସନାଟା ତା ନାକରେ ଓ ସୁଆଦଟା ପାଟିରେ ଲାଗି ରହିଥିଲା । ସେ ତା' ଲମ୍ବା ଜିଭରେ କଛୁ ସମସ୍ତ ଓଠ ଚାଟିବାରେ ଲାଗିଲା । ଶେଷରେ ବାହାରକୁ ଆସି ଦୁଇ ଚାରିଥର ହାଇ

ମାରି ଅଳସ ଭାଙ୍ଗିଲା । ତା' ପରେ ଗଧିଆ ବଣକୁ ଲାଗିଥିବା ଗାଁ ଆଡ଼କୁ ସିଧା ଚାଲିଲା । ଭାବୁଥାଏ, "ଆଃ, ସ୍ୱପ୍ନର ଭୋଜନଟା ସତରେ ମିଳିଯା'ନ୍ତା କି !"

ସଞ୍ଜ ପାହିଲା ବେଳକୁ ଗଧିଆ ଦେଖିଲା ବଣ ସୀମାରେ ଅଳ୍ପ ଦୂରରେ ଗୋଟିଏ ବେଶ୍ ମୋଟା ଛେଳି ତା'ର ଦୁଇଟି କଅଁଳିଆ ଛନ-ଛନିଆ ଛୁଆ ଧରି ଡାଳପତ୍ର ଖାଉଛି । ଗଧିଆର ଆନନ୍ଦ କହିଲେ ନ ସରେ । ସେ ଛେଳି ପାଖକୁ ଝପଟି ଯାଇ କହିଲା, "ଦେଖ ଛେଳି, ଆଜି ଯୋଗକୁ ତୁ ଆଉ ତୋ ଛୁଆ ଦି'ଟା ମୋ ହାବୁଡ଼ରେ ପଡ଼ିଛ । କେତେ ଦିନ ହେଲା ମୋ ପାଟି ପଡ଼ି ଯାଇଥିଲା । ଭୋକରେ ମୋ ପେଟ ଜଳୁଛି । ଆଜି ସକାଳ ଜଳଖିଆଟା ବେଶ୍ ଚମତ୍କାର ହେବ ।"

ଛେଳି ଆଗରେ ଭୋକିଲା ଗଧିଆକୁ ଦେଖି ଓ ତା' କଥା ଶୁଣି ଭୟରେ ଥରିଗଲା । ହେଲେ ଗୋଟିଏ ବୁଦ୍ଧି ପାଞ୍ଚି ସେ ଗଧିଆକୁ କଅଁଳେଇ କହିଲା, "ହଁ ତୁମେ ତ ମହା ବଳବାନ୍ ! ଆମ ପରି ଦୁର୍ବଳ ପ୍ରାଣୀ ତିନିଟାକୁ ଟାକୁ କରି ଗିଳି ଦେଇ ପାରିବ । ଆମର ଆଉ ଉପାୟ କ'ଣ ? ତେବେ ଆମକୁ ମାରିବା ଆଗରୁ ମୋର ସାନ କଥାଟିଏ ରଖିବ ? ଶେଷ ମୁହୂର୍ତ୍ତରେ ମୁଁ ଟିକିଏ ଠାକୁରଙ୍କୁ ପ୍ରାର୍ଥନା କରିବାକୁ ମନ କରୁଛି । ଏଇ ଯେଉଁ ଦେଉଳ ବେଢ଼ା ଦେଖୁଛ, ତା'ରି ଭିତରେ ମୁଁ ଟିକିଏ ପ୍ରାର୍ଥନା କରି ଆସେ, ଆମ ସମସ୍ତଙ୍କୁ ଖାଇବ ।"

ଗଧିଆ ରାଜି ହେଲା । ଛେଳି ତା' ଛୁଆ ଦୁଇଟାକୁ ଧରି ପ୍ରାର୍ଥନା କରିବା ବାହାନାରେ ବେଢ଼ା ଭିତରେ ପଶିଲା । ତା' ଭିତରୁ ଖୁବ୍ ଜୋର୍‌ରେ ବିକଳ ସ୍ୱରରେ ରଡ଼ି ଛାଡ଼ିଲା । ଗଧିଆ ଭାବିଲା ଛେଳି ପ୍ରାର୍ଥନା କରୁଛି ।

ଅଳ୍ପ ଦୂରରେ ଜଣେ ଲୋକ ତା' ଡାହାଳ କୁକୁରଟାକୁ ସାଙ୍ଗରେ ଧରି ଛେଳି ଚରାଉଥାଏ । ଏ ରଡ଼ି ଶୁଣି ସେ ତା' କୁକୁରଟାକୁ ସେଇ ଆଡ଼କୁ ଛୁଟାଇ ଦେଲା । କୁକୁର ଗଧିଆଟାକୁ ଦେଖିଲା ମାତ୍ରେ କାଳ ଯମ ପରି ବିଜୁଳି ବେଗରେ ତା' ଆଡ଼କୁ ଦୌଡ଼ିଲା । ଗଧିଆ ଛେଳି ଆଶା ଛାଡ଼ି ଜୀବନ ବିକଳରେ ଜଙ୍ଗଲ ଭିତରକୁ ପଳାଇଲା ।

ଗଧିଆ ବଗୁର ହାତରୁ ଖସିଯାଇଥିବା ଭୋଜନ କଥା ଭାବି ମନ-ଦୁଃଖରେ ପୁଣି ଜଙ୍ଗଲରୁ ବାହାରିଲା । ହଠାତ୍ ଦେଖିଲା ଗୋଟିଏ ଘୁଷୁରି ଓ ତା'ର ନଅଟି ଛୁଆ ପଡ଼ିଆରେ ବୁଲୁଛନ୍ତି । ଗଧିଆର ମନ କୁଣ୍ଢେମୋଟ ହୋଇଗଲା । ସେ ଭାବିଲା, “ଯାହାହେଉ, ଏତେ ବେଳକୁ ମୋ ଦୁଃଖ ଗଲା । ଛେଳି ତିନଟା ସିନା ଖସିଗଲେ, ଏ ଦଶଟା ପ୍ରାଣୀ ତ ମିଳି ଗଲେଣି । ଆଉ ଚିନ୍ତା କ'ଣ ?” ଧୀରେ ଧୀରେ ମା' ଘୁଷୁରି ପାଖକୁ ଯାଇ ସେ ଗର୍ଜନ କରି କହିଲା, “ଆଜି ଏକାବେଳେକେ ତୁମେ ଦଶଟାଯାକ ମୋ କବଳରେ ପଡ଼ିଛ । ମୁଁ ପୁଣି ଭୋକରେ ଅସ୍ଥିର । ଆଗେ ତତେ ଓ ପରେ ଗୋଟି ଗୋଟି କରି ତୋ ଛୁଆଗୁଡ଼ିକୁ ଛେନା ଖାଇଲା ପରି ପାଟିରେ ପକାଇ ଦେବି ।”

ଘୁଷୁରି ଗଧିଆ କଥା ଶୁଣି କହିଲା, “ହଁ, କାହିଁକି ନଖାଇବ ? ତୁମର ବଳ ଅଛି । ଆମକୁ ଯେ ପାଳିଛି, ସେ ତ ଦିନେ ଆମକୁ ଖାଇବାକୁ ଏପରି ମୋଟାସୋଟା କରି ବଢ଼ାଇଛି । ସେ ଖାଇଲେ କେତେ, ତୁମେ ଖାଇଲେ କେତେ ? ମୁଁ ବି ନଅଟା ଛୁଆର ଦାଉ ଆଉ ସହିପାରୁନି । ଏଗୁଡ଼ାକ ମହା ପେଟୁ, ଯେତେ ଖୁଆଇଲେ ବି ଏମାନଙ୍କ ପେଟ ପୂରୁନି । ହେଲେ ତୁମ ନିକଟରେ ମୋର ପ୍ରାର୍ଥନା—ଏ ପାଖରେ ଥିବା ନଈର ତୀର୍ଥଜଳରେ ଆମେ ଟିକିଏ ସ୍ନାନକରି ଆସୁ, ତୁମେ ଆମ ସମସ୍ତଙ୍କୁ ଖାଇବ ।” ଗଧିଆ ଘୁଷୁରି କଥାରେ ଆପତ୍ତି କଲାନି । ସେ କହିଲା, “ଚାଲ, ମୁଁ ମଧ୍ୟ ତୁମ ସଙ୍ଗରେ ତୀର୍ଥଜଳରେ ବୁଡ଼ ପକାଇ ଆସିବି ।”

ଘୁଷୁରି ଛୁଆମାନଙ୍କୁ ଧରି ଆଗେ ଆଗେ ଚାଲିଲା । ଗଧିଆ ଚାଲିଲା ପଛେ ପଛେ । ନଈଟି ଯେଉଁଠି ଖୁବ୍ ସରୁ ଓ ଗହୀର ହୋଇ ଗୋଟିଏ ସାନ ଜଳପ୍ରପାତ ତିଆରି କରିଥିଲା, ଘୁଷୁରି ଯାଇ ସେଇଠି ଅଟକିଗଲା । ସେଇଠି ନଈ ଉପରେ ଏପଟ୍ ସେପଟକୁ ଖଣ୍ଡିଏ କାଠଗଡ଼ ପଡ଼ିଥାଏ । ଘୁଷୁରି ଗଧିଆ ମନରେ ବିଶ୍ୱାସ ଆଣିବା ପାଇଁ କାଠ ଉପରେ ଚଢ଼ି ଆର ପାଖକୁ ଗଲା ଓ ଫେରିଆସିଲା । ତା'ପରେ ଗଧିଆକୁ ସେହିପରି କରିବାକୁ କହିଲା । ଗଧିଆ ଭାବିଲା, “ତୀର୍ଥଜଳରେ ସ୍ନାନ କରିବା ଆଗରୁ ବୋଧହୁଏ ଏପରି କରିବାକୁ ହୁଏ ।”

ଗଧିଆ କାଠ ଉପରେ ଚଢ଼ି ଯିମିତ ମଝିକୁ ଯାଇଛି, ଘୁଷୁରି ଥୋମଣି ଲଗାଇ ଗଡ଼ଟାକୁ ଇମିତ ଦୋହଲାଇ ଦେଲା ଯେ ଗଧିଆ ନିଜକୁ ସମ୍ଭାଳ ରଖି ନପାରି ଭୁସ୍‌କରି ପାଣି ଭିତରେ ପଡ଼ିଗଲା । ଜଳପ୍ରପାତରେ ପଡ଼ି ସେ ଗଡ଼ଉଇ ଚଡ଼ଇ ହୋଇ ତଳମୁଣ୍ଡକୁ ଭାସିଗଲା । ଗାର୍ଥଜଳରେ ବେଶ୍ ଗୋଟାଏ ବୁଡପକାଇ ସେ ଉପରକୁ ଉଠି କାଠପୋଲ ନିକଟକୁ ଆସିଲା ବେଳକୁ ଘୁଷୁରି ତା ଛୁଆମାନଙ୍କୁ ଧରି ସେ ମୁଲକରୁ ପାରି ।

ଗଧିଆ ନିଜ ଭାଗ୍ୟକୁ ନିନ୍ଦା କରି, ବୋକାମିକୁ ଧିକ୍କାର କରି କଛିଦୂର ଆଗକୁ ଚାଲିଲା । ଭାବିଲା, "ଆଜି କଛି ମିଳିବ ନାହିଁ । ଭୋକ ଉପାସରେ ପ୍ରାଣ ଯିବ ।"

ଆଉ ଅଳ୍ପଦୂର ଯାଇଛି, ସେ ଗୋଟିଏ କୁକୁଡ଼ାକୁ ଭେଟିଲା । ହଠାତ୍ ତା ମନରେ ଟିକିଏ ଆଶା ଜନ୍ମିଲା, ପାଟି ଲାଳେଇ ଉଠିଲା । ଦେହମୁଣ୍ଡର ଦରଜ ଉଭେଇଗଲା । ସେ ବିଚାରିଲା, "ତିନଟା ଗୁଲୁଗୁଲିଆ ଛେଳି ଆଉ ଦଶଟା ମୋଟା ଥାଲୁଲା ଘୁଷୁରି ତ ଦେଖି ଦେଖି ହାତରୁ ଖସି-ଗଲେ, ଏ ସାମାନ୍ୟ କୁକୁଡ଼ାଟା କି କାମରେ ଲାଗିବ ? ହେଲେ, ନାହିଁ ମାମୁଁଠାରୁ କଣା ମାମୁଁ ଭଲ ।"

ଗଧିଆ କୁଦାପଡ଼ି କୁକୁଡ଼ା ଆଗରେ ଆସି ବସିପଡ଼ିଲା । ନିଶରେ ଜିଭଟା ବୁଲାଇଆଣି ତାକୁ କହିଲା, "କେତେଦିନ ହେଲା ପେଟରେ କଛି ପଡ଼ି ନଥିବାରୁ ପେଟଟା ଜଳୁଛି । ତତେ ଚଳ୍ପକରି ଦେଲେ ପେଟରେ ଦାଉ ଟିକିଏ ହେଲେ ତ କମିଯିବ ! ଆ, ପାଖକୁ ଆ ।" କୁକୁଡ଼ା କହିଲା, "ମୋର ସେଥିଲାଗି ଚିନ୍ତା ନାହିଁ । ମାତ୍ର ମଲା ପୂର୍ବରୁ ମନବୋଧ କରି ଥରେ ବୋବାଇବା ପାଇଁ ମତେ ଅନୁମତି ଦିଅ ।" ଗଧିଆ ଏପରି ଦୁଇଥର ଠକାମିରେ ପଡ଼ି ବୁଦ୍ଧି ଶିଖିଛି । ସେ କୁକୁଡ଼ା କଥା ଜମା ଶୁଣିଲାନି ।

କୁକୁଡ଼ା କହିଲା, "ତୁମେ ଯଦି ମତେ ଅବିଶ୍ୱାସ କରୁଛ, ମୋ ଲାଞ୍ଜଟା ପାଟିରେ କାମୁଡ଼ି ଧର । ମୁଁ ଥରେ ବୋବେଇ ସାରିଲା କ୍ଷଣି ତୁମେ ମତେ ମାରି ଖାଇବ ।"

ଏଥର ଗଧିଆ ତା' କଥାରେ ରଜି ହୋଇ କୁକୁଡ଼ା ଲଞ୍ଜକୁ ଚୌକସ କରି କାମୁଡ଼ି ଧରିଲା । କୁକୁଡ଼ା ବେକକୁ ଟେକି, ଦେହକୁ ଫୁଲାଇ ଯେତେବେଳେ ଖୁବ୍ ଜୋର୍‌ରେ ବୋବାଇବାକୁ ଆରମ୍ଭ କରିଛି, ତା' ଲଞ୍ଜଟା ଫୁଲିଉଠି ଗଧିଆ ତଣ୍ଟିକୁ ଇମିତି ସଲସଲ କଲା ଯେ ଗଧିଆ ସମ୍ଭାଳି ନପାରି ଆଖିବୁଜି ପ୍ରଚଣ୍ଡ ଛିଙ୍କଟାଏ ଛିଙ୍କିଲା । ଫଳରେ କୁକୁଡ଼ା ଲଞ୍ଜଟା ଗଧିଆ ପାଟିରୁ ଖସିଗଲା । ଗଧିଆ ଆଖିଖୋଲି ଚାହିଁଲା ବେଳକୁ କୁକୁଡ଼ାଟା ଫୁର୍‌ର୍ । ଗଧିଆ ଆଉ କରିବ କ'ଣ ? ମନମାରି ମୁଣ୍ଡପୋତି ସେଠାରୁ ଚାଲିଲା । ଏ ସାମାନ୍ୟ ଭୋଜନଟା ବି ତା' କପାଳରେ ନଥିଲା ।

କିଛି ଦୂର ଯାଇଛି କି ନାହିଁ ସେ ଦେଖିଲା ପଡ଼ିଆରେ ଗୋଟିଏ ଘୋଡ଼ା ଓ ତା'ର ଦୁଇଟି ଛୁଆ ଚରୁଛନ୍ତି । କାଳବିଳମ୍ବ ନକରି ଗଧିଆ ଏକା ଦୌଡ଼କେ ଯାଇ ଘୋଡ଼ା ଆଗରେ ହାଜର । ଗର୍ଜନଟାଏ କରି ଘୋଡ଼ାକୁ କହିଲା, "ଆଜି ସକାଳ ସାରା ଟିକେ ଜଳଖିଆ ପାଇଁ ଏଣେ-ତେଣେ ବୁଲି ମୁଁ ବେଦମ୍ ହୋଇଗଲିଣି । ଭୋକରେ ମୋ ହଂସା ଉଡ଼ିଲାଣି । ତୁମ ଛୁଆଟାକୁ ଖା-ଇ-ବି ।

ଘୋଡ଼ା ଟିକିଏ ହେଲେ ନଡରି ଗଧିଆର ଭୋକିଲା ମୁହଁକୁ ଚାହିଁ ମୁହଁ-ଟାଣ କରି କହିଲା, "ସେ ଆଶା ଛାଡ଼, ବାବୁ ! ମୁଁ ମୋ ମାଲିକଙ୍କଠାରୁ ଚିଠି ନେଇ ଦୂରକୁ ଯାଉଛି । ଛୁଆଦୁଇଟା ଟିକିଏ ହାଲିଆ ହୋଇ ଯିବାରୁ ଏଠାରେ ବିଶ୍ରାମ ନେଉଛନ୍ତି । ଚିଠିରେ ଲେଖାଅଛି--ଯେ ମୋର ବା ମୋ ଛୁଆଙ୍କର ଦେହକୁ ଛୁଇଁବ, ତା'ର ମରଣ ନିଶ୍ଚିତ ।"

ଗଧିଆ ଦବିଯାଇ କହିଲା, "କାହିଁ, କି ଚିଠି ନେଇ ଯାଉଛୁ ଦେଖା ।" ଘୋଡ଼ା ଗଧିଆକୁ ପାଖକୁ ଡାକି ଖୁରିଉଠାଇ କହିଲା, "ଦେଖୁନ, ଚିଠିଟା ପରି ଖୁବ୍ ଦେହରେ ଲାଗିଛି ।" ଘୋଡ଼ା ଖୁରାରେ ଲୁହା କଣ୍ଟାମରା ହାଲ ପିଟା ହୋଇଥିଲା । ଗଧିଆ ଚିଠି ଦେଖିବ ବୋଲି ଖୁବ୍ ପାଖକୁ ଯେମିତି ଗୋଜିଆ ମୁହଁଟା ଆଣିଛି, ଘୋଡ଼ା ତା' ଥୋମଣିକୁ ଇମିତି ନର୍ଘାତିଆ ଲାତେ ପକାଇଲା ଯେ ସେ ଚିତ୍‌ପଟାଙ୍ଗ ହୋଇ ଭୂଇଁରେ ଗଡ଼ିପଡ଼ିଲା । ତା' ଥୋମଣି ଓ ପାଟିରୁ ଝରଝର ରକ୍ତ ବୋହିଲା । ବିଚ୍ଛିବି ବେହୋସ୍

ହୋଇ କିଛିକ୍ଷଣ ପଡ଼ିରହିଲା । ଏତିକିବେଳେ ଘୋଡ଼ା 'ହେଁ ହେଁ' ରଡ଼ିଟେ କରି ଛୁଆଙ୍କୁ ଧରି ଚାଲିଲା ।

କିଛି ସମୟ ପରେ ଗଧିଆର ଚେତା ଆସିଲା । ଘୋଡ଼ା ଓ ତା' ଛୁଆମାନେ କୁଆଡ଼େ ଗଲେଣି । ଉପରେ ଝଡ଼, ଭୋକରେ ପେଟ ପିଠିକୁ ଲାଗିଗଲାଣି । ସେ ବଡ଼ କଷ୍ଟରେ ଧୀରେ ଧୀରେ ପାଦପକାଇ ଆଗକୁ ଚାଲିଲା । ଗୋଟିଏ ପଥରଗଦା ତଳେ ପହଞ୍ଚି ଦେଖିଲା ଗୋଟାଏ ବଣୁଆ ମେଣ୍ଢା ସେ ଗଦା ଉପରେ ଛିଡ଼ାହୋଇଛି । ଗଧିଆର ପାଟି ପୁଣି ଜକେଇ ଆସିଲା । ସେ ମେଣ୍ଢା ଆଡ଼କୁ ଚାହିଁ କହିଲା, "ଆଚ୍ଛା, ବାପଧନ, ଆଉ ଯିବୁ କୁଆଡ଼େ ? ଠିକ୍ ସମୟରେ ମୋ ହାବୁଡ଼େ ପଡ଼ିଛୁ । ତୋର ଚମ, ମାଂସ, ହାଡ଼ ସବୁ ଚିକିଚିକି କରି ଚୋବାଇ ଖାଇବି ।"

ମେଣ୍ଢା କହିଲା, "ଗଧିଆ ଭାଇ, ସେଥିପାଇଁ ମୋର କିଛି ହେଲେ ଭୟ ନାହିଁ । ଏ ପୋଡ଼ା ଜୀବନରେ ଆଉ ଟିକିଏ ଲୋଭ ନାହିଁ । ଆସି ବୁଢ଼ା ହେଲିଣି, ଚରିବୁଲି କରିବାକୁ ଆଉ ବଳ ପାଉନି । ସତରେ ମତେ ଏଇଠି ମାରି ଖାଇଦିଅନ୍ତ କି ତୁମର ବଡ଼ ଧର୍ମ ହୁଅନ୍ତା । ହେଲେ କାହିଁକି ଏତେ କଷ୍ଟ କରି ମତେ ମାରିବାକୁ ଆସିବ ? ତୁମେ ଝରଣା ଆଡ଼କୁ ପଛକରି, ମୋ ଆଡ଼କୁ ମୁହଁ କରି ଯେଉଁଠି ଅଛ ସେଇଠି ଠିଆ ହୋଇ ରହିଥାଅ । ଯେତେ ବଡ଼ ଆଁ କରିପାରୁଛ କର । ମୁଁ ପଥରଗଦା ଉପରୁ କୁଦାମାରି ସିଧା ତୁମ ପାଟି ଭିତରେ ପଡ଼ିବି ।"

ଗଧିଆ ବିଚାରିଲା, "ମନ୍ଦ କ'ଣ ? ଖାଦ୍ୟଟା ତ ସିଧାସଳଖ ଆସି ଆପେ ଆପେ ପାଟି ଭିତରେ ପଶିଯିବ । ତେଣିକି ଚୋବାଇ ଖାଇବା କଥା ।" ମେଣ୍ଢାକୁ ପ୍ରସ୍ତୁତ ହେବାକୁ ଇସାରା ଦେଇ ସେ ମେଣ୍ଢା କହିବା ଅନୁସାରେ ପଥରଗଦା ତଳେ ଛିଡ଼ା ହୋଇଗଲା । ମେଣ୍ଢା ପଥରଗଦା ଉପରୁ ଇମିତି କୁଦାଟାଏ ମାରି ଗଧିଆ ଉପରେ ପଡ଼ିଲା ଯେ ଗଧିଆ ତା' ଧକ୍କା ଓ ମୁଣ୍ଡିଆ ଆଘାତରେ ଗଡ଼ି ଗଡ଼ି ଯାଇ ଧପାସ୍ କରି ଝରଣା ଭିତରେ ପଡ଼ିଲା । ପାଣି କାଦୁଅରେ ସରସର ହୋଇ, ପଥରଗରଡ଼ା ଉପରେ ଦଶ କଚଡ଼ା ଖାଇ ଉପରକୁ ଉଠିଲା ବେଳକୁ ମେଣ୍ଢା ଛୁ ।

ଗଧିଆ ଦୀର୍ଘଶ୍ୱାସଟାଏ ପକାଇ ଥକ୍କା ହୋଇ ଗୋଟିଏ ଗଛମୂଳେ ବସିପଡ଼ିଲା । ତା' ଆଖିରୁ ଜକ୍‌ଜକିଆ ପୋକ ବାହାରି ପଡ଼ୁଥାଏ । ଲାଞ୍ଜଟା ପଛକୁ ଲମ୍ବାଇ ଗଛମୂଳେ ବସି ସେ ଦିନଯାକର ଭୋଜଖିଆ କଥା ଭାବୁଥାଏ ।

ଏତିକବେଳେ ଜଣେ କାଠୁରିଆ ସେ ଗଛ ପଛପଟେ ତା' କୁରାଢ଼ିଟା ଧରି ଲୁଚି ବସିଥିଲା । ଗଧିଆକୁ ଦେଖି ସେ କୁରାଢ଼ିକୁ ଜବର କରି ଧରିଲା । ସଜ ଓଣ୍ଡି ଦାଢ଼ୁଆ କୁରାଢ଼ିରେ ଗଧିଆ ଲାଞ୍ଜକୁ ଇମିତି ଶକ୍ତ ଚୋଟ ଦେଲା ଯେ ଲାଞ୍ଜଟା ମୂଳରୁ ଛିଣ୍ଡିଯାଇ ଖଣ୍ଡେ ଦୂରରେ ପଡ଼ିଲା । ଗଧିଆ ଛଟପଟ ହୋଇ ପ୍ରାଣ ବିକଳରେ ଦୌଡ଼ି ପଳାଇଲା ବେଳେ ଭାବିଲା, "ଭଗବାନ୍, ଆଜି କି ଯୋଗରେ ରାତି ପାହିଥିଲା ! ଇମିତି ଭୋଜଖିଆ ଆଉ କାହା ଭାଗ୍ୟରେ ନଥିବ ।"



# ମଉସାଙ୍କ ମହୁଖିଆ



ଜଙ୍ଗଲ ଭିତରେ ରଜାଙ୍କ ଦରବାର ବସିଥାଏ । ପାତ୍ରମନ୍ତ୍ରୀ ରଜାଙ୍କୁ ଘେରି ବସିଥାନ୍ତି । ରଜା ବଡ଼ ବ୍ୟସ୍ତ ହୋଇ କହିଲେ, "ବଡ଼ ଆଶ୍ଚର୍ଯ୍ୟର କଥା, ମୋର ଏତେ ବଡ଼ ବଡ଼ କର୍ମଚାରୀ ଥାଉ ଥାଉ ସାମାନ୍ୟ କୋକଶିଆଳଟାକୁ ମୋ' ପାଖକୁ କେହି ଧରି ଆଣିପାରିଲେ ନାହିଁ ? ତା' ପରି ବଳବନ୍ତ ପ୍ରାଣୀ ହାତୀ, ବାଘ, ଗଧିଆ, ହରିଣ, ସମସ୍ତଙ୍କୁ ଚିତା କାଟିଦେଲା ?"

ସମସ୍ତେ ଲାଜରେ ମୁହଁ ତଳକୁ କରିଦେଲେ । କାଳିଆ ଭାଲୁଟା ପଛରେ ବସି ନାକ ସୁଡ଼ୁ ସୁଡ଼ୁ କରୁଥିଲା । ରଜାଙ୍କ କଥା ତାକୁ ବଡ ବାଧିଲା । ସେ ହଠାତ୍ ଥାଲୁଲା ଦେହଟାକୁ ଆସନରୁ ଉଠାଇ, ଗୋଳିଆ ନାକକୁ ଉପରକୁ ଟେକି, ଟିକିଏ ଗମ୍ଭୀର ସ୍ୱରରେ କହିଲା, "ଆପଣ ଚିନ୍ତା କରନ୍ତୁ ନାହିଁ, ମହାରାଜ ! କାଲି ସେ ପାଜି କୋକଟାକୁ ମୁଁ ନିଶ୍ଚୟ ରାଜଦରବାରରେ ହାଜର କରାଇବି । ଦେଖିବି ତା'ର ବହପ କେତେ ।"

ଏ କଥା ଶୁଣି ରଜାଙ୍କ ଛାତି କୁରେଣ୍ଟମାଟ ହୋଇଗଲା । ସେ ଆନନ୍ଦରେ ଫୁଲିଉଠି କହିଲେ, "ସାବାସ୍ ମଉସା ! ତୁମେ ଯଦି ଏତିକି କାମ କରିଦେବ, ମୁଁ ତୁମ ମୁଣ୍ଡରେ ନିଶ୍ଚୟ ଫାଟଗାଡ଼ି ବାନ୍ଧିଦେବି ।"

ତହିଁଆରଦିନ ସକାଳୁ ଭାଲୁ କୋକିଶିଆଳି ଘରଆଡ଼କୁ ଚାଲିଲା । କୋକି ତା' ଘର ଦୁଆରେ ଗୋଟିଏ ବଡ଼ିଆ ଫାଟକ କରିଥାଏ । ଫାଟକଟା ଭିତରୁ ବନ୍ଦ । ଭାଲୁ ଫାଟକଦୁଆରେ ହାଜର ହୋଇ ଡାକ ଛାଡ଼ିଲା, "ଘରେ ଅଛୁ କିରେ ପୁଅ ? ରଜାଙ୍କ ହୁକୁମ୍ ନେଇ ମୁଁ ଆସିଛି । ରଜାଙ୍କର କଡ଼ା ହୁକୁମ୍—ଆଜି ତୁ ଦରବାରରେ ହାଜର ନହେଲେ ତୋ' ମୁଣ୍ଡକାଟ ହେବ । ପାଣିରେ ରହି କୁମ୍ଭୀର ସାଙ୍ଗରେ କଳି କରିବା ଉଚିତ ନୁହେଁ । ଶୀଘ୍ର ବାହାରିପଡ଼ । ମୁଁ ତୋ ସାଙ୍ଗରେ ଅଛି ।"

କୋକି ସେତେବେଳେ ଫାଟକର ଭିତର ପାଖରେ ଶୋଇ ଖରା ପୁଉଁଥାଏ । ଭାଲୁର ପାଟିଶୁଣି ସେ ଗୋଟିଏ ଗାତ ଭିତରେ ପଶିଗଲା । ଘର ଭିତରେ ସେ ଅସଂଖ୍ୟ ଗାତକରି ରଖିଥାଏ । ତା ଘରଟା ଗୋଟାଏ ଦୁର୍ଗ । ଶତ୍ରୁ ଯେତେ ଚତୁର ହେଲେ ବି ତା' ଭିତରେ ବାଟବଣା ହୋଇଯିବ । ଗାତ ଭିତରେ ରହି କୋକିଶିଆଳି ଚିନ୍ତାକଲା, "ଏ ପୋଡ଼ାମୁହାଁ ଭାଲୁଟା ପୁଣି ଆସିଲାଣି । ଆଚ୍ଛା, ଏହାକୁ ଏମିତି ପାନେ ଦେବି ଯେ ରଜା ଆଗରେ ଉଚ୍ଛୃଙ୍ଖଳ ହେବାର ଫଳ ସାଙ୍ଗେ ସାଙ୍ଗେ ପାଇଯିବ । ଏଇଟା ମଲେ ଯାଇ ମୋର କଣ୍ଟା ଯିବ ।"

କୋକି ଗାତଭିତରୁ ବାହାରିପଡ଼ି କହିଲା, "ପ୍ରଣାମ, ମଉସା । ରଜାଙ୍କର ଏତେ ଚାକରବାକର ଥାଉଁ ଥାଉଁ ତୁମ ଭଳି ସନ୍ନ୍ୟାସୀଙ୍କୁ ସେ ଏ ସାମାନ୍ୟ କାର୍ଯ୍ୟରେ ପଠାଇଲେ କାହିଁକି ? ତାଙ୍କ ମୁଣ୍ଡରେ କ'ଣ ଟିକିଏ ବୁଦ୍ଧି ନାହିଁ ? ତେବେ ଏଡ଼େବଡ଼ ରାଇଜକୁ ସେ ଚଳାଇବେ କେମିତି ? ହେଲେ, ମଉସା, ମୁଁ କାଲି ରଜାଙ୍କ ପାଖକୁ ଯାଇଥା'ନ୍ତି । କ'ଣ କରିବି ? ଗୋଟିଏ ନୂଆପ୍ରକାର ଶସ୍ତା ମାଂସ ଖାଇ ମୋ' ଦେହଟା ଏପରି ବିଗିଡ଼ିପାଇଛି ଯେ ମୁଁ ଅଳପ ବାଟ ବି ଚାଲିପାରୁନାହିଁ ।"

ଭାଲୁ ଟିକିଏ ଆପଣାର ଲୋକପରି ଛଳନା ଦେଖାଇ କହିଲା, "କାହିଁକି ରେ ପୁଅ ? ଏମିତି କି ମାଂସ ଖାଇଲୁ କି ?" କୋକି ଟିକିଏ

ସାକୁଲଇ ହୋଇ କହିଲା, "ମଲା, ଆମ ପରି ଗରିବପ୍ରାଣୀ କ'ଣ ବଡ଼ଲୋକ ଖିଆ ଖାଇପାରିବେ ? ଗୋଟିଏ ଜାଗାରେ ଗୁଡ଼ାଏ ମହୁଫେଣା ଦେଖି ମୋର ଏତେ ଲୋଭ ହେଲା ଯେ ସେଥିରୁ ଚଉରସ ଫେଣେ ଖାଇଦେଲି । ଆଉ ଯାଏ କୁଆଡ଼େ ? ସେତିକ ବେଳୁ ତ ଦୁଇ ମୁହଁରେ ଗଳିଆ ଫିଟିଛି । ହେଲେ ସବୁଯାକ ଫେଣା କ'ଣ ସରିଲା ?"

ମହୁଫେଣା ନାଁ ଶୁଣି ଭାଲୁର ପାଟି ସଡ଼ସଡ଼ ହେଲା । ପାଟିରୁ ବୋହିପଡ଼ୁଥିବା ଲାଳକୁ ଢୋକ ଦେଇ ସେ କହିଲା, "କ'ଣ କହିଲୁ ପୁଅ ? ମହୁଫେଣା ! ଆରେ ସେହି ଜିନିଷ ତ ଅଳ୍ପ ଅଳ୍ପ ଲୋକଙ୍କୁ ମିଳିବ ନାହିଁ । ହେଲେ ପୁଅ, ମୋ' ଲାଗି ସେଥିରୁ ପୁଳାଏ କରାଇଦଅନ୍ତୁ କି, ସାତଜନ୍ମରେ ତୋ ଋଣ ଶୁଝିପାରନ୍ତି ନାହିଁ । ଦେଖନ୍ତି ରାଜା ତୋର କ'ଣ କରିପାରନ୍ତା ।"

ଭାଲୁ କଥା ଶୁଣି କୋକ ବୁଝିଲା ଔଷଧଟା ଠିକ୍ କାଠୂ କରୁଛି । ସେ ହସି ହସି କହିଲା, "ସତରେ ମଉସା, ତୁମେ ଏହି ସାମାନ୍ୟ ଖାଦ୍ୟ ଖାଇବାକୁ ରାଜି ? ତେବେ ମୋ' ସାଙ୍ଗରେ ଚାଲ, ମୁଁ ତୁମକୁ ଏମିତି ମହୁ-ଭଣ୍ଡାର ଦେଖାଇ ଦେବି ଯେ ତୁମ ଭଳି ଦଶଜଣ ବି ତା'ର ଦଶ ଭାଗରୁ ଭାଗେ ଶେଷ କରିପାରିବେ ନାହିଁ ।"

ଭାଲୁ ଏକଥା ଶୁଣି କହିଲା, "କି କଥା କହୁଛୁ, ପୁଅ ? ଆରେ ପୃଥିବୀର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଯେଉଁଠି ଯେତେ ମହୁଫେଣା ଅଛି ତୋ' ମଉସାର ଏ ଛୋଟିଆ ପେଟଟାକୁ ନିଅଣ୍ଟ, କାହିଁକି ଏମିତି ବାହାପିଆ ପଣ ଦେଖାଉଛୁ, କହିଲୁ ?"

"ଆସ ତେବେ" କହି କୋକ ଭାଲୁକୁ ବାଟ କଢ଼ାଇଲା । ପାଖରେ ଜଣେ କାଠବ୍ୟବସାୟୀର ବିରାଟ କାଠ ଗୋଦାମ । ଗୋଦାମରେ ପ୍ରକାଣ୍ଡ ଶାଳୁଆ କାଠଗଡ଼ମାନ ଏଣେତେଣେ ପଡ଼ିଛି । ସେଥିରୁ ଗୋଟିଏ ବଡ଼କାଠ ଅଧାଫାଳ ହୋଇଛି । ଆଉ ତା' ମଝିରେ ଗୋଟିଏ କଳା ମଶ ହୋଇଛି । କୋକ ସେହି ଗଡ଼ଟାକୁ ଭାଲୁକୁ ଦେଖାଇ ଦେଇ କହିଲା, "ଦେଖୁଛ, ମଉସା ! ଏ ଯେଉଁ ଫାଟଟା ଅଛି ଯାର ଭିତରେ ଅକଳନ ମହୁଫେଣା ଖୁନ୍ଦିହୋଇ ରହିଛି । ତୁମେ ଯେବେ ଏଇ ମେଲା ପାଖରୁ

ପଶିବ, ଦେଖିବ ମୋ କଥା ସତ କି ମିଛ । ଏ ମହୁଟା ଭାରି ମିଠା । ହେଲେ ମଜଯା, ଲୋଭ କରି ଗୁଡ଼ାଏ ଖାଇବ ନାହିଁଟି ? ଅତି ବେଶି ଖାଇଲେ ଆଉ ରାଜଦରବାରକୁ ଫେରିଯାଇ ପାରିବ ନାହିଁ । ଶେଷରେ ମୋର ଖାଲି ବଦନାମ୍ ହେବ ।"

କୋକିର କଥା ନସରୁଣୁ ଭାଲୁ ଆଗପଛ ନବିଚାରି ଅଧାଫାଳ ହୋଇଥିବା କାଠଗଡ଼ ଭିତରେ ତାର ଆଗଗୋଡ଼ ଦୁଇଟା ଆଉ ମୁହଁଟା ପୂରାଇଦେଲା । ଏଣେ କୋକି ତ ଆଗରୁ ପ୍ରସ୍ତୁତ ଥିଲା । ସେ ବେଳକାଳ ଉଣ୍ଡି ହଠାତ୍ କଳା ଦୁଇଟାକୁ ଟାଣି ବାହାର କରିଦେଲା । ଭାଲୁ ଆଉ ଯାଏ କୁଆଡ଼େ ? ତା'ର ଗୋଡ଼ ଦୁଇଟା ଆଉ ମୁଣ୍ଡଟା ଫାଟ ଭିତରେ ଏମିତି ଚିପି ହୋଇ ରହିଗଲା ଯେ ସେ ଛଟପଟ ହୋଇ ଗାଁ ଗାଁ ରଡ଼ି ଛାଡ଼ିଲା । ବିଚରା ଫାଟଭିତରୁ ଖସି ଆସିବାକୁ ଯେତେ ବାଡ଼େଇ ପିଟି ହେଲା କିଛି ଫଳ ହେଲା ନାହିଁ । ଏତିକବେଳେ କୋକି ଚମ୍ପଟ୍ ।

ଭାଲୁର ରଡ଼ିଶୁଣି କାଠବ୍ୟବସାୟୀ ଘର ଭିତରୁ ବାହାରି ଆସିଲା । ଭାଲୁଟାକୁ ଏମିତି ଅଖାଙ୍ଗରେ ପଡ଼ିଥିବା ଦେଖି ସେ ଦୌଡ଼ିଯାଇ ଗାଁ ଲୋକଙ୍କୁ ଡାକି ପକାଇଲା । ଲୋକେ ଠେଙ୍ଗାବାଡ଼ି, କାତିକୁରାଢ଼ି, କୋଡ଼-କୋଦାଳ ଯେ ଯାହା ପାଇଲେ ହାତରେ ଧରି ଅଣନିଶ୍ୱାସୀ ହୋଇ ଦୌଡ଼ିଲେ ଗୋଦାମ ଭିତରକୁ ।

ଲୋକଙ୍କ କୋଳାହଳ ସମୁଦ୍ରଜୁଆର ପରି ମାଡ଼ି ଆସିବାର ଶୁଣି ଭାଲୁର ପିଳେହିପାଣି ହୋଇଗଲା । ସେ ପ୍ରାଣ ବିକଳରେ ତା' ମୁହଁ ଆଉ ଗୋଡ଼ ଦୁଇଟା ଏମିତି ଜୋର୍‌ରେ ଉପରକୁ ଟାଣିଆଣିଲା ଯେ ମୁହଁରୁ ଆଉ ଦୁଇ ଗୋଡ଼ରୁ ପ୍ରାୟ ଚମଡ଼ା ଛାଡ଼ିଯାଇ କାଠର ଫାଟ ଭିତରେ ଚିପିହୋଇ ରହିଗଲା । କାନ ଦୁଇଟା ଓ ଦୁଇ ଗୋଡ଼ର ନଖଗୁଡ଼ାକ ମଧ୍ୟ ଚମଡ଼ା ସାଙ୍ଗରେ ରହିଗଲା ।

ରକ୍ତସ୍ନାନ ହୋଇ ଭାଲୁ କାଠଗଡ଼ ଭିତରୁ ଯେମିତି ବାହାରି ପଡ଼ିଛି, ବାଡ଼ିଆଡ଼ ତା' ଉପରେ ନସ୍ତୁକ ପ୍ରହାର ବୃଷ୍ଟି ହେଲା । ସେ ବାଟ ଅବାଟ ନମାନି ଲୋକଗହଳି ଭିତରେ ପଶି ନଈକୂଳକୁ ଦଉଡ଼ି ପଳାଇଲା । ତା' ଧକ୍କାରେ କୂଳରେ ଠିଆ ହୋଇଥିବା ଦୁଇ ଜଣଟା

ମାଇପି ଲୋକ ପାଣି ଭିତରେ ଖସିପଡ଼ିଲେ । ଲୋକେ ଭାଲୁକୁ ଛାଡ଼ି ମାଇପିଗୁଡ଼ାକୁ ପାଣି ଭିତରୁ ଉଦ୍ଧାର କରିବାକୁ ଧାଇଁଲେ । ଭାଲୁ ଏତିକିବେଳେ ନଈସୁଅରେ ଉବେଇ ଟୁବେଇ ହୋଇ ତଳମୁଣ୍ଡକୁ ଭାସି ଚାଲିଗଲା ।

ଦୁଇ ତିନ ମାଇଲ୍ ତଳକୁ ଭାସିଯାଇ ବିଚରା ଗୋଟିଏ ଜଙ୍ଗଲିଆ ଜାଗାରେ କୂଳକୁ ଉଠିଲା । ସେତେବେଳକୁ ତା' ମୁଣ୍ଡର ଛିଣ୍ଡିଯାଇଥିବା ଅଂଶ ଆଉ ଦୁଇ ଗୋଡ଼ରୁ ରକ୍ତର ଧାର ଚାଲିଥାଏ । ପ୍ରାଣ ଯିବ କି ରହିବ ତାକୁ ଜଣାଯାଉ ନଥାଏ । ଯନ୍ତ୍ରଣାରେ ଛଟପଟ ହୋଇ ବିଚରା ଗୋଟିଏ ଗଛମୂଳରେ ଲମ୍ବ ହୋଇ ପଡ଼ିଗଲା ।

ଏତିକିବେଳେ କୋକିଟା କୁଆଡ଼ୁ ଆସି ସେଇଠି ହାଜର । ଭାଲୁକୁ ଏ ଅବସ୍ଥାରେ ଦେଖି କୋକି ପରିହାସ କଲାପରି କହିଲା, "କି ମଉସା, ମହୁଖିଆଟା କେମିତି ହେଲା, ପେଟପୂରା ଖାଇଲ ତ ? କ'ଣ, ମହୁଟା ମିଠା ଲାଗିଲା ନାହିଁ ? ଆରେ ଆରେ, ଏ ନୂଆ ନାଲି ପୋଷାକ କିଏ ଦେଲା ତୁମକୁ ? କହିହୋ, ଗୋଟାଏ ନୂଆ ଧର୍ମ ଗ୍ରହଣ କଲଣି ନା କ'ଣ ?"

କୋକିର ଛୁରୀଗୁଳିଆ କଥା ଶୁଣି ଭାଲୁର ବ୍ରହ୍ମ ଚଡ଼ିଲା । ହେଲେ ଆଉ କି ପ୍ରତାପ ଅଛି ଯେ ଦେଖାଇବ ? ରାଗ ଆଉ ଅପମାନରେ ପୁଣି ପାଣିକୁ ଡେଇଁପଡ଼ି ବିଚରା ବଡ଼କଷ୍ଟରେ ନଈ ଆରପାଖକୁ ପହଁରି ଚାଲିଗଲା ।

ଆରପାରିରେ ପହଞ୍ଚିଲା ବେଳକୁ ତା'ର ଢୁଷୁରିବାକୁ ବି ବଳ ନଥାଏ । ଟିକିଏ ପଡ଼ିରହି ସେ ଭାବିଲା, "ମୁହଁରୁ ତ ଫାଳେ ଗଲା, କାନ ଗଲା, ଦୁଇ ଗୋଡ଼ର ନଖ ଗଲା । ଆଉ ରଜାଙ୍କୁ ଏ ରୂପ ଦେଖାଇବି କେମିତି ? ମାତ୍ର ରଜାଙ୍କ ପାଖକୁ ନ ଗଲେ ସେ ସଇତାନ୍ କୋକିଟାକୁ ଶାସ୍ତି ଦିଆଇବି କେମିତି ?"

ପଛ ଦୁଇଗୋଡ଼ ଲମ୍ବାଇ ଭାଲୁ ଢୁଷୁରି ଢୁଷୁରି ଆସ୍ତେ ଆସ୍ତେ ଚାଲିଲା । ଶେଷରେ ବହୁତ କଷ୍ଟରେ ଦରମରା ହୋଇ ରଜାଙ୍କ ଦରବାରରେ ପହଞ୍ଚିଲା ।

ରାଜା ଓ ଦରବାରର ଅନ୍ୟାନ୍ୟ ପଶୁ ଭାଲୁର ଏ ରୂପ ଦେଖି ଅବାକ୍ ହୋଇଗଲେ । ଭାଲୁ ରାଜାଙ୍କ ଆଗରେ ଲମ୍ବ ହୋଇ ପଡ଼ିଯାଇ କହିଲା, "ମହାରାଜ, ସେ ନିମକହାରାମ କୋକିଶିଆ ଲାଗି ଆଜ ମୋର ଏ ଦଶା । ସେ ମୋତେ ଜୀବନରେ ମାରି ଦେବାକୁ ବସିଥିଲା । ଭାଗ୍ୟବଳ ଥିବାରୁ ମୁଁ ନମରି ବଞ୍ଚିଗଲି ।" ସାଙ୍ଗେ ସାଙ୍ଗେ ରାଜା ହୁକୁମ ଦେଲେ, "ରାଜବୈଦ୍ୟଙ୍କୁ ଦେଖାଇ ମନ୍ତ୍ରୀଙ୍କର ଚିକିତ୍ସା କରାଅ । ଆଉ ସେ ଦେଶଦ୍ରୋହୀ କୋକିଶିଆକୁ ଧରି ଆଣିବାକୁ ଭୂଆ ବରଡ଼ାକୁ ଏହିକ୍ଷଣି ପଠାଅ । ସେ ସଇତାନ୍ କୋକକୁ କାଲି ସକାଳୁ ଫାଶୀ ଦିଆଯିବ ।"

ରାଜାଙ୍କ ଆଦେଶ ଶୁଣି ସମସ୍ତେ ଏକସ୍ୱରରେ କହି ଉଠିଲେ, "ଜୟ, ମହାରାଜାଙ୍କର ଜୟ, ଭାଲୁମନ୍ତ୍ରୀ ଜିନ୍ଦାବାଦ୍ ।"



# ତିନୋଟି ବର



ଜଣେ ଲୋକର ଗୋଟିଏ ଚାକର ଥାଏ । ଚାକରର ନାଁ ଦାସିଆ । ଦାସିଆ ଦିନରାତି ଖଟେ, ହେଲେ ମାଲିକ ତାକୁ ପଇସାଟିଏ ଦିଏନି । ଦିନେ ଦାସିଆ ମାଲିକକୁ କହିଲା, "ସାଆନ୍ତେ, ମୁଁ ତ ଏତେଦିନ କାମ କଲିଣି; ଏଥର ମୋ ପାଉଣାଟା ମିଳୁ । ଏଣିକି ବାହାରକୁ ଯାଇ ଦୁନିଆଟା ଟିକିଏ ଦେଖେ ।" ମାଲିକ ବଡ଼ କଷ୍ଟରେ ଦାସିଆର ବରଷକର ମଜୁରି ତିନୋଟି ଟଙ୍କା ଦେଲା, ମାତ୍ର ଦାସିଆ ବଡ଼ ସାଦାସିଧା ଲୋକ । ପଇସାର ମୂଲ୍ୟ ଜାଣି ନଥିଲା । ସେ ଭାବିଲା "ଆଉ ପରୁଆ କ'ଣ ? କାହିଁକି ଆଉ ମୁଣ୍ଡଗୁଞ୍ଜି ଏ ଲୋକଟା ପାଖରେ ପଡ଼ିରହିବି ? ଏତେଗୁଡ଼ାଏ ପଇସା ନେଇ ଏଥର ମନଇଚ୍ଛା ଏଣେତେଣେ ବୁଲିପାରିବି ।" ଦାସିଆ ତା ମୁଣିରେ ସେ ତିନୋଟି ଟଙ୍କା ପଦାକୁ ବାହାରିପଡ଼ିଲା ।

ମନଫୁଲଣିଆ ଗୀତ ଗାଇ ବାଟରେ ଯାଉଯାଉ ଜଣେ ବାମନ ସଙ୍ଗେ ତା'ର ଭେଟ ହେଲା । ଲୋକଟା ଦେଖିବାକୁ ବକଟେ ହେଲେ

କ'ଣ ହେବ, ବହୁତ ଗୁଣିଗାରେଡ଼ ତାକୁ ଜଣା । ଦାସିଆକୁ ଦେଖି ସେ କହିଲା, "କି ହୋ ଭାଇ, ବେଶ୍ ମନଖୁସିରେ ଗ୍ଭଲିଛ ତ ! କ'ଣ ପାଞ୍ଚ ପଚାଶ କେଉଁଠୁ ପାଇଯାଇଛ ନା କ'ଣ ?" ଦାସିଆ ଉତ୍ତର ଦେଲା, "କାହିଁକି, ମୋର କେଉଁ କଥାରେ ଅଭାବ ? ଦେହରେ ବଳ ନାହିଁ, ନା ହାତରେ ଧନ ନାହିଁ ? ପୂରା ତିନିଟଙ୍କା ପରା ମୋ ମୁଣିରେ ଅଛି ।" ବାମନ ଟିକିଏ ମୁରୁକିହସା ଦେଇ କହିଲା, "ଭାଇ, ତୁମର ତ ବଳ ବୟସ ସବୁ ଅଛି, ତୁମେ କଅଣ ରୋଜଗାର କରିପାରିବନି ? ଦେଖ ମୁଁ ଏତେ ଟିକେ ମଣିଷ, ମୁଠେ ଖାଇବାକୁ ମୋର ପଇସାଟିଏ ବି ନାହିଁ । ମୋତେ କିଛି ଦେଇପାରିବ ?" ଦାସିଆ ମନଟା ତରଳି ଗଲା । ସେ ସଙ୍ଗେ ସଙ୍ଗେ ତା' ମୁଣିରୁ ସବୁଯାକ ଟଙ୍କା କାଢ଼ି ବାମନ ହାତରେ ଦେଇ ପକାଇଲା । ବାମନ ଟଙ୍କା ପାଇ ମହା ଖୁସି । କହିଲା, "ଆହା ! ତୁମ ହୃଦୟଟା କେତେ କଅଁଳ ଭାଇ ! ସବୁଯାକ ଟଙ୍କା ମୋତେ ଦେଇ ଦେଲ ? ଆଚ୍ଛା ମୁଁ ବି ତୁମର କିଛି ଉପକାର କରିବି । ତୁମର ତିନିଟଙ୍କା ବଦଳରେ ମୋତେ ତିନୋଟି ବର ମାଗ ।" ଦାସିଆ କହିଲା, "ତାହେଲେ ମୋତେ ଏମିତି ଗୋଟିଏ ଧନୁ ଦିଅ, ଯାହା ବଳରେ ମୁଁ ଯେକୌଣସି ଜିନିଷକୁ ଉପରୁ ତଳକୁ ଖସାଇ ଦେଇପାରିବି; ଏମିତି ଗୋଟିଏ କେନ୍ଦରା ଦିଅ, ଯାହାର ବାଜଣା ଶୁଣିଲେ ଯେ କୌଣସି ଲୋକ ଥେଇ-ଥେଇ ନାଚିବ; ଆଉ ମୋ କଥାରେ ଏମିତି ଶକ୍ତି ଦିଅ ମୁଁ ଯାହାକୁ ଯାହା ମାଗିବି, ସେ ନାହିଁ କରିପାରିବନି ।" ବାମନ ଦାସିଆର କଥା ରଖିଲା ।

ଦାସିଆ ଧନୁଶର ଆଉ କେନ୍ଦରା ଧରି ଆଗକୁ ଗ୍ଭଲିଲା । ଅଳ୍ପଦୂର ଯାଇଛି କି ନାହିଁ ଦେଖିଲା ଜଣେ ଫକୀର ଗଛ ଉପରେ ବସିଥିବା ଗୋଟିଏ ଚଢ଼େଇକୁ ଏକଲୟରେ ଗ୍ଭହିଁରହିଛି । ଦାସିଆକୁ ଦେଖି ସେ କହିଲା, "ଭାଇ, ଏ ଚଢ଼େଇଟାକୁ ଯଦି ତଳକୁ ଖସାଇ ଦେଇପାରନ୍ତ, ବହୁତ ଟଙ୍କା ପୁରସ୍କାର ଦିଅନ୍ତି ।" ଦାସିଆ ବିଗ୍ଭରିଲା, "ଫକୀରର ଚଢ଼େଇ ମାଉଁସଖିଆ ସଉକ, ପୁଣି ତା' ପାଖରେ ଗୁଡ଼ାଏ ଟଙ୍କା ! ଲୋକଟା ଚୋର ନୁହେଁ ତ ? ଆଚ୍ଛା, ଦେଖାଯାଉ ।"

ଦାସିଆ ଶରମାରି ଏକାଥରକେ ଗଛରୁ ଚଢ଼େଇଟିକୁ ଖସାଇ-ଦେଲା । ଚଢ଼େଇଟି ଲଥ୍‌କରି ଗୋଟିଏ କଣ୍ଟାବୁଦା ଭିତରେ ପଡ଼ିଲା ।

ଫକର ବଡ଼ ଆଗ୍ରହରେ ଚଢ଼େଇ ପାଇଁ ଗୁରୁଣ୍ଡି ଗୁରୁଣ୍ଡି ବୁଦାଭିତରେ ପଶିଲା । ଏତିକବେଳେ ଦାସିଆ ତା'ର କେନ୍ଦରା ବଜାଇବାକୁ ଆରମ୍ଭ କଲା । ଏଥର ଦେଖ ମଜା । ଫକର ଚଢ଼େଇ ଧରିବ କ'ଣ, କଣ୍ଟାବୁଦା ଭିତରେ ଥେଇ ଥେଇ ନାଚିଲା । କେନ୍ଦରା ଯେତିକ ଜୋର୍‌ରେ ବାଜିଲା ତା' ପାଦ ସେତିକ ଉପରକୁ ଉଠିଲା । ତା' ଲୁଗାପଟା ଖଣ୍ଡ ଖଣ୍ଡ ହୋଇ ଚିରିଗଲା, ଦେହ ଯୋରା ଯୋରା ହୋଇଗଲା । ସେ ବିକଳ ହୋଇ ଚିତ୍କାର କଲା, "ଥାଉ ଥାଉ ଭାଇ, ସେତିକ ହେଉ, ସେତିକ ହେଉ ! ମଲି ମଲି, ମତେ ରକ୍ଷା କର ।" ମାତ୍ର ଦାସିଆ ତା' କେନ୍ଦରାରେ ଆଉ ଗୋଟିଏ ସ୍ୱର ଦେଇ ପାଟିକରି କହିଲା, "ଜୁଆଚୋର, ସଇତାନ୍, ଗରିବଲୋକଙ୍କ ଚଣ୍ଡିଚିପି ପଇସା ମାରିଆଣିଛୁ । ଏତିକରେ ଛାଡ଼ିଛୁ ତୋତେ ?" ଫକିର ଆହୁରି ଉଚ୍ଚକୁ ଡେଇଁ ଆହୁରି ବେଗରେ ନାଚିଲା । କେତେବେଳକୁ ସେ ଅଧାପ୍ରାଣ । କଣ୍ଟାରେ ଲାଗି ତା' ଦେହର ଲୁଗା ଚିକିଚିକି ହୋଇ ଚିରି ପବନରେ ଉଡ଼ିବାକୁ ଲାଗିଲା । ସେ ଅପମାନ ହୋଇ ପାଟିକଲା, "ଭାଇ, ମୋର ଶହେଟଙ୍କା ଅଛି, ସବୁ ନିଅ ପଛେ ମୋ ଜୀବନଟା ରଖ ।" ସେତିକିରେ ଦାସିଆର କେନ୍ଦରା ବଜା ବନ୍ଦ ହେଲା । ଫକିର ଅଧାଲଙ୍ଗଳା ଆଉ ରକ୍ତମ୍ଳାନ ହୋଇ ବୁଦା ଭିତରୁ ଘୁଷୁରି ଘୁଷୁରି ବାହାରିଲା । ବିଚରାର ଚଢ଼େଇମରା ସଉକ ଛାଡ଼ିଯାଇଥିଲା । ଟଙ୍କାତକ ଦାସିଆକୁ ଧରାଇଦେଇ ବଡ଼ କଷ୍ଟରେ ସେଠୁ ଖୁଲା ଖୁଲା ବାହାରିଗଲା ।

ହେଲେ ଫକିରର ଦେହଟା ଯେମିତି ଜଳୁଥାଏ, ମନଟା ମଧ୍ୟ ସେମିତି । ସେ ତା' ଛୁଣ୍ଡାଦାଢ଼ିରେ ହାତମାରି ଗୁଣୁଗୁଣୁ ହୋଇ କହିଲା, "ଆଚ୍ଛା, ଦେଖାଯାଉ । ତୋତେ ଇମିତି ପାନେ ଦେବ ଯେ ସବୁଦିନ ପାଇଁ ତୋର ମନେରହିଯିବ ।"

ଫକିର ଯାଇ କଚେରିରେ ବିଚାରପତିଙ୍କୁ ଗୁହାରି କଲା, "ଧର୍ମାବତାର ! ଗୋଟିଏ ବାଉଳା ଭିକାରି ମୋ ପଇସାପତ୍ର ସବୁ ଲୁଟିକରି ନେଇ ମୋତେ ପିଟି ପିଟି ଛାଡ଼ିଦେଇଛି । ମୋ ପ୍ରାର୍ଥନା ଶୁଣିବା ହେଉ, ହଜୁର ! ଲୋକଟା କାନ୍ଧରେ ଧନୁଶର ଆଉ ହାତରେ ଗୋଟାଏ କେନ୍ଦରା ଧରି ବୁଲୁଛି ।"

ବିଗ୍ବିରପତି ସଙ୍ଗେ ସଙ୍ଗେ ଗ୍ବରଆଡ଼େ ଖବର ପଠାଇଦେଲେ । ଅଳ୍ପସମୟ ଭିତରେ ସରକାରୀ ଲୋକେ ଦାସିଆକୁ ଧରିଆଣି କଚେରିରେ ହାଜର କରାଇଲେ । ବିଗ୍ବିରପତିଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଦାସିଆ କହିଲା, "ହଜୁର, ଏ ଲୋକଟା ନପଟ ମିଛୁଆ । ମୁଁ ତା' ଟଙ୍କା ଲୁଟି କରିନି ! ସେ ମୋ କେନ୍ଦରା ବଜା ଶୁଣି ନିଜ ଇଚ୍ଛାରେ ମୋତେ ଶହେଟଙ୍କା ପୁରସ୍କାର ଦେଇଛି ।"

ବିଗ୍ବିରପତି କିନ୍ତୁ ତା' କଥାରେ ବିଶ୍ୱାସ ନକରି କହିଲେ; "ଅସମ୍ଭବ ! ଅସମ୍ଭବ ! ଏ ଡକାୟତଟାକୁ ଫାଶୀଖୁଣ୍ଟରେ ଝୁଲାଇ-ଦିଅ ।"

ବିଗ୍ବିରପତିଙ୍କ ଆଦେଶରେ ଦାସିଆକୁ ଫାଶୀଖୁଣ୍ଟ ପାଖରେ ହାଜର କରାଗଲା । ସେ ବିଗ୍ବିରପତିଙ୍କୁ ହାତଯୋଡ଼ି ଜଣାଇଲା, "ଧର୍ମାବତାର ! ମୋର ଶେଷଭିକ୍ଷା ପୂରଣ କରାଯାଉ । ମୋ କେନ୍ଦରାରେ ଗୋଟିଏ ମାତ୍ର ସ୍ୱର ଦେବାପାଇଁ ଅନୁମତି ମିଳୁ ।"

ଏକଥା ଶୁଣି ଫକିର ଚିତ୍କାର କରିଉଠି କହିଲା, "ନା, ନା, ନା ହଜୁର ! ସେକଥା କେବେ କରନ୍ତୁ ନାହିଁ ! ଥରେ ମାତ୍ର କେନ୍ଦରା ବଜାଇବାକୁ ତାକୁ କଦାପି ଅନୁମତି ଦିଅନ୍ତୁ ନାହିଁ ।" ବିଗ୍ବିରପତି ରାଗିଉଠି କହିଲେ, "ଚୁପକର, ବଦମାସ୍ ! ବିଚରା ମରିବା ପୂର୍ବରୁ ଥରେ ମାତ୍ର ତା'ର ପ୍ରିୟ କେନ୍ଦରାଟି ବଜାଇବ । ସେଥିରେ କାହାର ଯାଏଆସେ କଅଣ ?" କଥା କଅଣ ? ଏତିକିବେଳେ ବାମନର ଶେଷ ବରଟିର ଫଳ ଫଳିଲା । ବିଗ୍ବିରପତି ଦାସିଆର କଥାକୁ ନାହିଁ କରିପାରିଲେ ନାହିଁ ।

ଦାସିଆ ତା' କେନ୍ଦରାରେ ସ୍ୱର ଦେବାକୁ ଯାଇଛି କି ନାହିଁ ଫକିର ପାଟିକରି ଉଠିଲା, "ମୋତେ ଭଲକରି ବାନ୍ଧିପକାଅ, ମୋତେ ଭଲକରି ବାନ୍ଧିପକାଅ ।" ହେଲେ ଫକିର କଥା ପଚାରୁଛି କିଏ ? କେନ୍ଦରା ବାଜିବା ମାତ୍ରେ ବିଗ୍ବିରପତି, କିରାଣି, ଚପରାସୀ, ଦେଖଣାହାରି ସମସ୍ତେ ପାଦଉଠାଇ ନାଚିବାକୁ ଆରମ୍ଭ କଲେ । ଫକିର ବି ସମସ୍ତଙ୍କ ସଙ୍ଗେ ତାଳଦେଇ ନାଚିଲା । ଆଗ ଆଗ ଅଳ୍ପ ଅଳ୍ପ ପାଦଉଠାଇ ଧୀରେ ଧୀରେ ନାଚିବାକୁ ସମସ୍ତଙ୍କୁ ଭାରି ମଜା ଲାଗିଲା । ମାତ୍ର ଯେତେବେଳେ କେନ୍ଦରାର

ସ୍ୱର ଚେଇଉଠିଲା, ଆଉ ସମ୍ଭାଳେ କିଏ ? ବର୍ଦ୍ଧରପଣ୍ଡଙ୍କଠାରୁ ଫକିର ପର୍ଯ୍ୟନ୍ତ ସମସ୍ତେ ଲଗାମଛଡ଼ା ହୋଇ ଆହୁରି ଆହୁରି ଉପରକୁ କୁଦାମାରି ନାଚିବାକୁ ଲାଗିଲେ । ବର୍ଦ୍ଧରପଣ୍ଡ ଅଣନିଶ୍ୱାସୀ ହୋଇ ପାଟି କଲେ, "ବନ୍ଦକର, ବନ୍ଦକର ! ତୋର କେନ୍ଦରାବଜା ବନ୍ଦକର ! ମୁଁ ତୋତେ ଛାଡ଼ିଦେଲି । ସବୁ ଟଙ୍କା ତୋର ହେବ ।" ଦାସିଆ କେନ୍ଦରାବଜା ଛାଡ଼ି ଫକିର ବେକକୁ ଯାଇ ଧରିଲା । ତାକୁ ଥରେ ଜୋର୍‌ରେ ହଲାଇଦେଇ କହିଲା, "ପାଜି ! କହ କାହାଠାରୁ ଏ ଟଙ୍କା ମାରିଆଣିଛୁ ? କହିବୁ ନା ମୋ କେନ୍ଦରା ପୁଣି ବାଜିଉଠିବ ?" ଫକିର ଚିତ୍କାର କରି କହିଲା, "କହୁଛି ଭାଇ କହୁଛି । ଟିକିଏ ଥୟ ଧର । ମୁଁ ସ୍ୱୀକାର କରୁଛି । ତୁମେ ନ୍ୟାୟରେ ଏ ଟଙ୍କା ମୋ'ଠୁ ପାଇଛ ।"

କେନ୍ଦରାବଜା ବନ୍ଦ ରହିଲା । ଦାସିଆ ବଦଳରେ ଫକିର ଫାଶୀ-କାଠରେ ଝୁଲିଥାନ୍ତା, ମାତ୍ର ଦାସିଆର ଅନୁରୋଧରେ ବର୍ଦ୍ଧରପଣ୍ଡ ତାକୁ କ୍ଷମା କରିଦେଲେ ।



# ଉକୁଣି ଛାରପୋକ ଉପାଖ୍ୟାନ



ଜଣେ ରାଜାଙ୍କ ମଶାରି ଭିତରେ ଉକୁଣିଟାଏ ବସା କରିଥାଏ । ନିତି ରାତିରେ ରାଜାଙ୍କୁ ନିଘୋଡ଼ ନିଦ ଲାଗିଗଲେ ସେ ଲୁଚିବାସ୍ଥାନରୁ ବାହାରିପଡ଼ି ତାଙ୍କ ଦେହରୁ ମନଇଚ୍ଛା ପେଟେ ରକ୍ତ ପିଏ । ଏମିତି ରାଜାଙ୍କ ରକ୍ତ ପିଇପିଇ ଉକୁଣିଟା ବେଶ୍ ଗୋଲଗାଲ ହୋଇଯାଇଥାଏ ।

ଦିନେ କ'ଣ ହେଲା ନା, ରାଜା ଶୋଇବାଘରେ ପଶିବା ଆଗରୁ ମଶାରିଭାଙ୍ଗରେ ଲୁଚିରହିଥିବା ଆଉ ଗୋଟାଏ ପ୍ରାଣୀ ଦୈବାତ୍ ଉକୁଣି ଦେହରେ ଘଷି ହୋଇଗଲା । ସେଇଟା ଆଉ ଗୋଟାଏ ଉକୁଣି ନୁହେଁ, ଗୋଟାଏ ହେଙ୍କଲା ଦିଶୁଥିବା ବାଦାମୀରଙ୍ଗର ଛାରପୋକ । ତାକୁ ଦେଖି ଉକୁଣିର ରାଗ ତାଳୁକୁ ଚଢ଼ିଗଲା ।

"ତୁ ଅପରିଚ୍ଛନ୍ନିଆ ଗୁରପୋକଟା ଏ ଭିତରେ କେମିତି ପଶିଲୁ ? ଏଇଟା ଖୋଦ୍ ଆମ ରଜାଙ୍କ ଶୋଇବାଘର ବୋଲି ଜାଣିନାହୁଁ ?"

ଠିକ୍ ଜବାବ୍ ଦେବାକୁ ଗୁରପୋକର ପାଟି ଖଲଖଲ ହେଉଥିଲା, ହେଲେ ସେ ଅଟକିଗଲା । ଉକୁଣିଟା ତ ସେଠାର ମାଲିକ ହୋଇ-ଯାଇଛି । ପାଣିରେ ରହି କୁମ୍ଭୀର ସଙ୍ଗେ କଳି କଲେ ଫଳ କ'ଣ ଭଲ ହେବ ? ତା'ର ସବୁ କାମ ମାଟି ହୋଇଯିବ ଯେ ।

ରଜାଙ୍କ ନଅରବେଢ଼ାରେ ମାଳୀର କୁଡ଼ିଆ ଭିତରେ ଗୁରପୋକଟା ତା' ପିଲାଝିଲା, ନାତିନାତୁଣୀ, ଅଣନାତି, ଅଣନାତୁଣୀ ପଲ ଧରି ସୁଖରେ ରହୁଥାଏ । ମାଳୀ ତା' ବାଉଁଶଖଟିଆରେ ବସା କରିଥିବା ହଜାର ହଜାର ଗୁରପୋକ ଲାଗି ଟିକିଏ ହେଲେ ବ୍ୟସ୍ତ ହେଉନଥିଲା । ସେ ତକିଆରେ ମୁଣ୍ଡଦେଇ ଖଟିଆ ଉପରେ ପଡ଼ିଗଲେ କାଠଗଡ଼ପରି ଶୋଇଯାଏ । ସତେ ଯେମିତି ଜଗତଯାକର ନିଦ ତାକୁ ମାଡ଼ିବସେ । ତା' ଦେହଯାକ କବାଟ ଗୁରପୋକ ସେନା ଘୁଇହୋଇଗଲେ ବି ତା'ର କୁମ୍ଭକର୍ଣ୍ଣ ନିଦ ଭାଙ୍ଗେନାହିଁ ।

ଗୁରପୋକ ଭାବୁଥିଲା, ମାଳୀର ରକ୍ତ ମନ୍ଦ ନୁହେଁ । ସେ ରକ୍ତ ମଧ୍ୟ ପ୍ରଚୁର ମିଳୁଛି । ହେଲେ ରଜାଙ୍କ ରକ୍ତ କ'ଣ ଏମିତି ସେମିତି ରକ୍ତ ? କପାଳରେ ଥିଲେ ଯିନା ସେଥିରୁ କଣିକାଏ ସେବା କରିବାକୁ ମିଳେ !"

ମେ ମନକୁମନ ଏମିତି କହୁଥିଲାବେଳେ ଉକୁଣିଟା ହ୍ୱସ୍ ହ୍ୱସ୍ ଶବ୍ଦ କରି କହିଲା, "ନିକାଲ୍ ଏଇଠୁ ! ନହେଲେ ଧରାପଡ଼ି ତୁ ଖତମ୍ ହୋଇଯିବୁ ।"

ଗୁରପୋକ ଟିକିଏ ନରମ ସ୍ୱରରେ ଉତ୍ତର ଦେଲା, "ଭାଇ, ତୁମ ଘରେ କ'ଣ ଅତିଥିମାନଙ୍କୁ ଏମିତି ବ୍ୟବହାର କରାଯାଏ ? ତୁମେ ରଜାଙ୍କ ରକ୍ତ ଏତେ ପିଇଲ, ରଜାଘରର ଚଳଣି ଟିକିଏ ହେଲେ ଶିଖିଲ ନାହିଁ ? ସନ୍ଥ ହୁଅନ୍ତୁ କି ସଇତାନ୍ ହୁଅନ୍ତୁ ଅତିଥି ବନ୍ଧୁପରି ଆଦର ପାଇବା କଥା । ତା'ଛଡ଼ା କୀଟମାନଙ୍କ ଉଚ୍ଚକୁଳରେ ତୁମର ଓ ମୋର ଜନ୍ମ ।

କେତେକ ପ୍ରାଣୀ ମାତ୍ର ଦୁଇଟି ଗୋଡ଼ରେ, ଆଉ କେତେକ ଚାରିଟି ଗୋଡ଼ରେ କାମ ଚଳାଉଛନ୍ତି; କିନ୍ତୁ ଆମେ ଗୁଡ଼ିଫୁଲାଇ ଆରାମରେ ଛଅଟା ଗୋଡ଼ରେ ଡଗଡଗ ବୁଲିଯାଇପାରୁଛେ । ଆଉରି ମଧ୍ୟ ଆମ ଉକୁଣି ଓ ଓ୍ୱାରପୋକ ଜାତି ସାରା ପୃଥିବୀରେ ସବୁ ପ୍ରାଣୀଙ୍କଠାରୁ ସଂଖ୍ୟାରେ ଅଧିକ । ଆମେ ଦୁହେଁ ହାତ ମିଳାଇଦେଲେ କାହାକୁ ଡରିବାର ନାହିଁ ।"

ଉକୁଣି କହିଲା, "ନା, ରଜା ଆଉ ତାଙ୍କ ଲୋକଙ୍କୁ ମଧ୍ୟ ନୁହେଁ ।" ଓ୍ୱାରପୋକ ଆହୁରି ଟିକିଏ ଫୁଲିଯାଇ କହିଲା, "ସମ୍ରାଟ ଆଉ ତାଙ୍କ ସୈନ୍ୟମାନଙ୍କୁ ବି ନୁହେଁ ।"

"ହେଲେ ବନ୍ଧୁ, ମାଇଲିଏ ଦୂରରୁ ତୁମ ଦେହଟା ଏମିତି ଗନ୍ଧାଉଛି ଯେ ରଜାଙ୍କ ଲୋକେ ଆଖିବୁଜିକରି ମଧ୍ୟ ତୁମକୁ ଧରି-ପକାଇବେ ।"

"କ'ଣ କହିଲ, ମୋ ଦେହଟା ଗନ୍ଧାଉଛି ? ମୁଁ ଏ କଥା ଜାଣିନି କି କେବେ ଶୁଣିନି । ଆମ ଜେଜେବାପାଙ୍କ ବାପା ଅମଳରୁ ମାଳୀ ପରିବାର ଭିତରେ ଆମେ ପୋଷା ହୋଇଛୁ । ଆମ ସୁଧାରି ମାଳୀଟି ତ କେବେ ଏ କଥା କହିନି ।"

"ଆଃ, ସେ ମଳମୁଣ୍ଡିଆ ଝାଳ ଲଟପଟ ମାଳୀଟାକୁ ଆମ ରଜାଙ୍କ ସଙ୍ଗେ ସମାନ କରନାହିଁ । ରଜାଙ୍କ ଦେହ ତ ମହମହ ବାସୁଛି ।"

"କ୍ଷମା କରିବ ଉକୁଣି ଭାଇ, ହେଲେ ଏ ବଖରାର ମହକରେ ମୋ ଦେହ କି ତୁମ ଦେହର ଗନ୍ଧ ରଜା କ'ଣ ବାରିପାରିବେ ?"

ଟିକିଏ ଉଠି ଉକୁଣି କହିଲା, "ମୋ ଦେହ ତ ଗନ୍ଧାଉ ନାହିଁ । କି ସାହସରେ ତୁମେ ମୋ ଘରେ ପଶି ମୋତେ ଅପମାନ କରୁଛ ?"

"ନାହିଁ ନାହିଁ, ତୁମେ ଭଲ ମୁଁ ବି ଭଲ । ମୁଁ ସବୁରକମ ରକ୍ତ ଚାଖିଛି—ଲୁଣି ରକ୍ତ, ଆମ୍ବିଳା ରକ୍ତ, ଉଷୁମ ରକ୍ତ, ଶୀତଳ ରକ୍ତ—ଖାଲି ରଜାଙ୍କ ମହୁଆ ରକ୍ତ ଟିକିଏ ଚାଖିବାକୁ ମୁଁ କେତେବେଳୁ ଚାହିଁ-ରହିଛି । ସେ ରକ୍ତ ମୋ ଜିଭର ଏତେ ନିକଟକୁ ଆସିଗଲାବେଳେ ତୁମେ ମୋତେ ନିକାଳିଦେବ ?"

ଉକୁଣି ମନରେ ଗ୍ଧାରପୋକ ପ୍ରତି ଟିକିଏ ଦୟା ଆସିଲା । ସେ ଆଉ ଗ୍ଧାରପୋକକୁ କଷ୍ଟର କଥା କହିଲା ନାହିଁ । ରଜା ଶୋଇଥିଲାବେଳେ କେମିତି ଆଚରଣ କରିବ ସେ ଗ୍ଧାରପୋକକୁ ଶିଖାଇଦେଲା । ତାକୁ ସତର୍କ କରିଦେଇ ଉକୁଣି କହିଲା, "ଦେଖ, ରଜାଙ୍କୁ ନିଦ ନଲାଗୁଣୁ ତୁମେ ଯଦି ତରତର ହୋଇ ତାଙ୍କ ଉପରକୁ ମାଡ଼ିଯିବ, ତେବେ ସବୁ କଥା ଶେଷ । ରଜାଙ୍କ ଲୋକେ ଆଲୁଅ ଆଉ ସଣ୍ଢ଼ାଶି ଧରି ଆସି ଆମ ଉପରେ ଚଡ଼ାଉ କରିଦେବେ ।

ଗ୍ଧାରପୋକ ଶପଥ କରି କହିଲା, "ନା ନା, ମୁଁ କେବେ ସେମିତି କରିବି ନାହିଁ । ତୁମେ ଭୋଜନ ପାଇଁ ନ ଆଗେଇଲେ ମୁଁ ମୋ ସ୍ଥାନରୁ ଇଞ୍ଚେ ହେଲେ ଘୁଞ୍ଚିବି ନାହିଁ ।"

ଗ୍ଧାରପୋକ କଥାରେ ଉକୁଣିର ବିଶ୍ୱାସ ଜନ୍ମିଲା । ସେ ଖୁସି ହୋଇଗଲା ।

ରାତି ହେଲା । ରଜା ମଣୋହି ସାରି ପଲଙ୍କ କରିବାକୁ ଆସିଲେ । ସେ ଶେଯରେ ଶୋଇବାମାତ୍ରେ ଚାକରମାନେ ଆଲୁଅ ଲିଭାଇଦେଇ ଚାଲିଗଲେ । ଉକୁଣି ହଲଚଲ ନହୋଇ ରଜାଙ୍କ ଘୁଂଗୁଡ଼ିର ବଂଶୀସ୍ୱରକୁ ଅପେକ୍ଷା କରି ରହିଲା । ହେଲେ ଗାଉଁଲି ଗ୍ଧାରପୋକଟା ଅସମ୍ଭାଳ ହୋଇଉଠିଲା । କେତେବେଳେ ଭୋଜନବେଳ ଆସିବ ତାକୁ ଜଣାପଡ଼ିଲା ନାହିଁ । ରଜାଙ୍କ ମାଂସର ବାସନା ତାକୁ ପାଗଳ କରିଦେଲା । ତା' ପାଟିରୁ ଥପଥପ ହୋଇ ଲାଳ ଗଡ଼ିଲା, ପେଟଟା ଭୋକରେ ଜଳିଲାପରି ତାକୁ ଲାଗିଲା । ବନ୍ଧୁର ହୁସିଆରି କି ନିଜର ଶପଥ ଆଉ ତା'ର କିଛି ମନେରହିଲା ନାହିଁ । ରଜାଙ୍କର ହଲଚଲ ଯେମିତି ବନ୍ଦ ହୋଇଯାଇଛି ସେ ତାଙ୍କ ରସୁଆଳ ଦେହର ତାଜା ରକ୍ତ ଶୋଷିବାକୁ ବିଜୁଳିବେଗରେ ଛୁଟିଗଲା । ଆଉ ମୁହୂର୍ତ୍ତେ ବିଳମ୍ବ ନକରି ସେ ଏକା ନିଶ୍ୱାସକେ ରଜାଙ୍କ ନାଲି ଟହଟହ ରକ୍ତରୁ ପୁଳାଏ ଟାଣିନେଲା ।

ରଜାଙ୍କୁ ନିଦ ଲାଗିନଥିଲା । ମୁନିଆ ତତଲା ଛୁଞ୍ଚିଟାଏ ତାଙ୍କ ଦେହରେ କିଏ ଫୋଡ଼ିଦେଲା ପରି ତାଙ୍କୁ ଲାଗିଲା । ସେ ଚିତ୍କାରକରି ଶେଯରୁ ତଳକୁ ଡେଇଁପଡ଼ିଲେ ।

ତାଙ୍କ ପାଟି ଶୁଣି ଜଗୁଆଳଗୁଡ଼ାକ ଘରଭିତରକୁ ଦୌଡ଼ିଆସିଲେ । ସେମାନେ ଶେଯଟା ଏପଟ ସେପଟ ଓଲଟାଇ ସବୁଆଡ଼େ ଖୋଜିପକାଇଲେ । ଦୁଇ ବନ୍ଧୁ କେଉଁଠି ହେଲେ ଲୁଚିବାକୁ ଥାନ କି ବେଳ ପାଇଲେ ନାହିଁ । ଏତେଗୁଡ଼ାଏ ଆଖିକୁ ଏଡ଼ାଇଦେଇ ଯାଆନ୍ତେ କୁଆଡ଼େ ? ଏକା ପାହାରକେ ଲେଖି ଗ୍ରରପୋକଟା ଛତୁ ହୋଇଗଲା । ତା' ଲାଗି ହତର ଉକୁଣିଟା ବି ମଲା ।



# ବୁଧିଆର ତୀକ୍ଷ୍ଣ ବୁଦ୍ଧି



ବୁଧିଆ ତା' ମାଲିକ ପାଖରେ ଦଶବର୍ଷ ଖଟିଲା । ତେଣେପରେ ଦିନେ ସେ ମାଲିକଙ୍କୁ ଜଣାଇଲା, "ଆଜ୍ଞା, ମୋତେ ଏଥର ମେଲାଣି ଦିଅ । ମୁଁ କାମଛାଡ଼ି ଘରକୁ ମା' ପାଖକୁ ଯିବି । ବୁଧିଆ ବଡ଼ ବିଶ୍ୱାସୀ ଚାକର । ମାଲିକ ତା' ଉପରେ ଭାରି ଖୁସିଥିଲା । ସେ ବୁଧିଆକୁ ତା' ମୁଣ୍ଡ ଆକାରର ରୁପାମୁଣ୍ଡାଟିଏ ଉପହାର ଦେଇ ବିଦାୟ ଦେଲା ।

ବୁଧିଆ ରୁପାମୁଣ୍ଡାଟା ଗାମୁଛାରେ ଗୁଡ଼ାଇ କାନ୍ଧରେ ପକାଇ ଘରଆଡ଼କୁ ଚାଲିଲା । ମନଫୁଲାଣିଆ ଗୀତ ଗାଇଗାଇ ବାଟରେ ଯାଉଛି, ଦେଖିଲା ଜଣେ ଲୋକ କଳାଘୋଡ଼ାଟିଏ ଚଢ଼ି କଦମ୍ବଗଛକରେ ଘୋଡ଼ା ଚୁଟାଇଛି । ବୁଧିଆ ଫୁସ୍‌ଫୁସ୍ ହୋଇ କହିଲା, "ଆଃ, ଘୋଡ଼ାଚଢ଼ାଠାରୁ ସମ୍ପତ୍ତି ନାହିଁ । ଲୋକଟା ଘରେ ଚଉକି ଉପରେ ବସିଲାପରି ଆରାମରେ ଘୋଡ଼ା ଉପରେ ବସିଛି, ପାଦରେ ଗୋଡ଼ପଥର କଣ୍ଟା ବାଜୁନାହିଁ, ଜୋତା

ଟିକିଏ ସତୁନାହିଁ, ହେଲେ ସେ କେମିତି ଆଗକୁ ମାଡ଼ିଯାଉଛି ତାକୁ ଜଣା-ପଡ଼ୁନାହିଁ ।"

ବୁଧିଆର କଥା ଘୋଡ଼ାସବାର କାନରେ ଟିକିଏ ବାଜିଗଲା । ସେ ଘୋଡ଼ା ଅଟକାଇ କହିଲା, "ତାହାହେଲେ ତୁମେ ଚାଲି ଚାଲି ଯାଉଛ କାହିଁକି ?" ବୁଧିଆ ଉତ୍ତର ଦେଲା, "ଦେଖୁନ, ଏ ବୋଝଟା ପରା ବୋହିଛି । ଏଇଟା ରୁପାମୁଣ୍ଡାଟାଏ ହେଲେ କ'ଣ ହେବ ଏତେ ଓଜନ ଯେ ମୋ କାନ୍ଧ ଫାଟିପଡ଼ୁଛି ।"

ଘୋଡ଼ାସବାର ହସି ହସି କହିଲା, "ଆଚ୍ଛା, ତାହାହେଲେ ବଦଳ କରିବା ? ମୋ ଘୋଡ଼ା ତୁମେ ନେବ, ତୁମ ବୋଝଟା ମୋତେ ଦେବ । ରାଜି ?"

ବୁଧିଆ କହିଲା, "ପଚାରୁଛ କ'ଣ ? ମୁଁ ପୂରା ରାଜି । ହେଲେ ଏଇଟାକୁ ଘୋଷାରି ଘୋଷାରି ତୁମେ ଦମ୍ ନିକାଲିଯିବ ।"

ଘୋଡ଼ାମାଲିକ ତଳକୁ ଓହ୍ଲାଇ ରୁପାମୁଣ୍ଡାଟା ଧରିଲା । ବୁଧିଆକୁ ଘୋଡ଼ା ଉପରେ ବସାଇଦେଇ ତା' ହାତରେ ଲଗାମଟା ଧରାଇଦେଲା । କହିଲା, "ଦୁଇ ଓଠ ମେଲାଇ ଶବ୍ଦ କରି 'ଜପ୍' କହିଦେଲେ ଘୋଡ଼ା ପବନ ବେଗରେ ଉଡ଼ିବ ।"

ବୁଧିଆକୁ ଘୋଡ଼ାଚଢ଼ା ମଉଜ ଲାଗୁଥାଏ । ଘୋଡ଼ା ଆସ୍ତେ ଆସ୍ତେ ଚାଲୁଥାଏ, ବୁଧିଆ ଗୁଣୁଗୁଣୁ ହୋଇ ଗୀତ ଗାଉଥାଏ । କିଛି ବାଟ ଏମିତି ଯାଇଛି, ଆଉ ଟିକିଏ ବେଗରେ ଘୋଡ଼ା ଚଳାଇବାକୁ ତା'ର ମନ ହେଲା । ସେ ଦୁଇ ଓଠ ମେଲାଇ ଟିକିଏ ଉଚ୍ଚସ୍ୱରରେ କହିଲା 'ଜପ୍' । ଘୋଡ଼ାକୁ କି ଆଉ ଅପେକ୍ଷା କରିହୁଏ ? ସେ ଖେପାମାରି ଏମିତି ବେଗରେ ଦୌଡ଼ିଲା ଯେ କ'ଣ ହେଉଛି ଜାଣିପାରିବା ଆଗରୁ ବୁଧିଆ ଛିଟିକି ଆଡ଼ ହୋଇ ଗୋଟିଏ ଖାଲ ଭିତରେ ପଡ଼ିଲା । ସେତେବେଳକୁ ଜଣେ ଗଉଡ଼ ତା' ଗାଈ ଅଡ଼ାଇ ସେ ବାଟରେ ଯାଉଥିଲା । ସେ ଘୋଡ଼ାର ଲଗାମଟା ଧରିପକାଇ ନଥିଲେ, ଆଉ ତା'ର ପତ୍ତା ମିଳି ନଥାନ୍ତା ।

କିଛି ସମୟ ପରେ ବୁଧିଆର ଚେତା ଆସିଲା ଓ ସେ ଉଠି ଠିଆହେଲା । ସେ ଗଉଡ଼କୁ କହିଲା, "ଏମିତି ଗୋଟାଏ ଘୋଡ଼ାରେ

ଚଢ଼ିବା କୌତୁକ କଥା ନୁହେଁ । ଏଇଟା ଠାଏ ଠାଏ ଝୁଣ୍ଟିପଡ଼ ଚଢ଼ିଥିବା ଲୋକଟାକୁ ଏମିତି ଜୋର୍‌ରେ ଫୋପାଡ଼ିଦିଏ ଯେ ସାବଧାନ ନଥିଲେ ତା' ହାଡ଼ଗୋଡ଼ ଚୂନା ହୋଇଯିବ । ଏ ଘୋଡ଼ାକୁ ଆଉ ରଖିବନି । ମୋର ଘୋଡ଼ାଚଢ଼ା ସଉକ ଏତିକି । ତୁମ ଗାଈଟା ତ ଏଇଟାଠାରୁ ଯଥେଷ୍ଟ ଭଲ । ଏମିତି ସୁଧାସିଧା ଗାଈଟିଏ ରଖିଥିଲେ ଲୋକ ଯେତିକି ଆସ୍ତେ ଯିବାକୁ ଚାହିଁବ ତାକୁ ସେତିକି ଆସ୍ତେ ଅଡ଼େଇ ନେଇପାରିବ । ତା'ଠାରୁ ଦୁଧ, ଦହି, ଲହୁଣି ମନଇଚ୍ଛା ପାଇବ । ଅଚ୍ଛା ଭାଇ ଏମିତି ଗାଈଟିଏ ମୋ ପାଇଁ କରାଇ ଦିଅନ୍ତନି ?''

ଗଉଡ଼ ମୁରୁକିହସା ଦେଇ କହିଲା, ''ଏ ଗାଈଟାଲାଗି ତୁମର ଯେବେ ଏଡ଼େ ସଉକ, ତୁମ ଘୋଡ଼ାଟା ଦେଇ ମୋ ଗାଈଟା ନେଉନ ?''

ବୁଧିଆର ଆନନ୍ଦ ଦେଖେ କିଏ ? ସଙ୍ଗେ ସଙ୍ଗେ ଗାଈର ପଘାଟା ନିଜେ ଧରି ଘୋଡ଼ାର ଲଗାମଟା ଗଉଡ଼କୁ ଧରାଇଦେଲା ।

ଗଉଡ଼ ଘୋଡ଼ା ପିଠିରେ ଚଢ଼ି ଚାଲିଗଲା ଆଉ ବୁଧିଆ ଗାଈ ଅଡ଼େଇ ତା' ବାଟରେ ଚାଲିଲା । ବିଚାରିଲା—ମୋ ଭାଗ୍ୟ ଟାଣଥିବାରୁ ସିନା ଏଡ଼େ ସହଜରେ ଲକ୍ଷ୍ମୀପରି ଗାଈଟିଏ ପାଇଗଲି ! ମୋର ଆଉ ପରୁଆ କ'ଣ ? ଶୋଷ ହେଲେ ତ ପ୍ରାୟ ଦୁଧ ଅଛି । ଭୋକ ହେଲେ ଚୂଡ଼ା, ମୁଢ଼ି, ରୁଟି ଯାହା ମିଳୁ ତା' ସଙ୍ଗେ ଦହି, ଛେନା ଖାଇପାରିବ । ମୋର ଆଉ ଅଧିକ କ'ଣ ଲୋଡ଼ା ?

ସେତେବେଳକୁ ଉଦୁଉଦିଆ ଦିପହର । ବୁଧିଆ ଦେହରୁ ଗମଗମ ଝାଳ ବୋହିଲଣି । ଶୋଷରେ ତା' ତଣ୍ଟି ଶୁଖିଗଲାପରି ଲାଗୁଛି । ସେ ଗାଈଟାକୁ ଗୋଟିଏ ଗଛଖୁଣ୍ଟରେ ବାନ୍ଧିଦେଇ ତା' ପାଣିଗିଲାସଟା ବାହାର କଲା । ଗିଲାସଟା ଗାଈର ପହ୍ଲା ତଳକୁ ବାଁହାତରେ ଧରି ଡାହାଣହାତଟା ଯେମିତି ତା' ଥନରେ ଲଗାଇଦେଇଛି, ଗାଈଟା ଏମିତି ଲାତ ମାରିଲା ଯେ ବୁଧିଆ ଡିନଗଡ଼ା ଦେଇ ଖଣ୍ଡେଦୂରରେ ପଡ଼ିଲା । ଭାଗ୍ୟକୁ ଜଣେ ଛେଳିଚରାଳି ତା' ଛେଳି ଧରି ସେ ବାଟରେ ଯାଉଥିଲା । ବୁଧିଆର ଏ ଅବସ୍ଥା ଦେଖି ସେ ପାଖକୁ ଆସି ତାକୁ ତଳୁ ଉଠାଇଲା । ବୁଧିଆକୁ

ସେ ଡିଷ୍ଟରିଲା, "କଥା କ'ଣ ଭାଇ ?" ବୁଧିଆ ଗୋଟି ଗୋଟି ସବୁକଥା କହିଲା । ଛେଳିଚରାଳ ତା' ପାଣିଠେକିରୁ ଗିଲାସେ ପାଣି ବଢ଼ାଇଦେଇ କହିଲା, "ନିଅ, ପାଣିମନ୍ଦାଏ ପିଇ ଟିକିଏ ତାଜା ହୋଇଯାଅ । ତୁମ ଗାଈଟା ବୁଢ଼ୀ ହୋଇଗଲାଣି; ଦୁଧ ଦେବ କୁଆଡ଼ୁ ? ଏଇଟା ଖାଲି କଂସେଇଖାନାକୁ ଯୋଗ୍ୟ ।"

ବୁଧିଆ ମୁଣ୍ଡରେ ହାତଦେଇ ବସିପଡ଼ିଲା । କହିଲା, "ହାୟରେ ବିଧାତା, ଏ କଥା କିଏ ଜାଣିଥିଲା ? ଏଇଟା ଯେବେ ଛେଳିଟିଏ ହୋଇଥା'ନ୍ତା, କିଛି କାମରେ ଲାଗିଥା'ନ୍ତା । ଏଇଟାକୁ ନେଇ ଏବେ ମୁଁ କରିବି କ'ଣ ?" ଛେଳିଚରାଳ ଏକଥା ଶୁଣି କହିଲା, "ବ୍ୟସ୍ତ ହୁଅନାହିଁ । ତୁମକୁ ସାହାଯ୍ୟ କରିବାକୁ ତୁମର ଏ ବୁଢ଼ୀଗାଈଟା ବଦଳରେ ମୋ ଛେଳିଟା ତୁମକୁ ଦେବି ।"

କଥାଟା ବୁଧିଆ ମନକୁ ପାଇଲା । ଗାଈ ବଦଳରେ ଛେଳିଟା ଧରି ଘରଆଡ଼େ ଚାଲିଲା । କିଛିଦୂର ଯାଇଛି, ଦେଖିଲା ଜଣେ ଗାଉଁଲୋକ ମୋଟା ମାଙ୍ସିଆ କୁକୁଡ଼ାଟେ କାଖରେ ପକାଇ ସେଇ ହାଟରେ ଯାଉଛି । ଦୁହେଁ କିଛିବାଟ ଦୁଃଖସୁଖ ହୋଇ ଚାଲିଲେ । ହାଟରେ ଯାହା ଯାହା ଘଟିଥିଲା ବୁଧିଆ କୁକୁଡ଼ାବାଲାକୁ କହିଲା । କୁକୁଡ଼ାବାଲା ବୁଧିଆର ଛେଳିଟିକୁ ପ୍ରଶଂସା କରି ତା' ମନକୁ ଖୁସ୍ କରିଦେଲା । ସେ କହିଲା, "ମୁଁ ଏ କୁକୁଡ଼ାଟା ବିକି ସଉଦା କରିବାକୁ ବଜାରକୁ ଯାଉଛି । ହାତରେ ଧରି ଦେଖ କୁକୁଡ଼ାଟା କେମିତି ଓଜନିଆ ହୋଇଛି । ହେଲେ ଏଇଟାକୁ ମୋଟେ ହ'ମାସ ହୋଇଛି । ବେଶ୍ ଜାତିଆ କୁକୁଡ଼ାର ଛୁଆ ଏଇଟା ।"

ବୁଧିଆ କୁକୁଡ଼ାକୁ ହାତରେ ଧରି କହିଲା, "ହଁ, ତୁମ କଥା ସତ । ହେଲେ ମୋ ଛେଳିଟା କ'ଣ ଏମିତି ସେମିତି ଛେଳି ? ଟିକିଏ ଭଲକରି ଦେଖ ।"

କୁକୁଡ଼ାବାଲା ଛେଳିଟାକୁ ଚାହିଁ ମନେ ମନେ କ'ଣ ଭାବିଲା । କ୍ଷଣକ ପରେ ମୁହଁଟାକୁ ଟିକିଏ ଗମ୍ଭୀର କରିଦେଇ କହିଲା, "ହେଇଟି ଶୁଣ, ଏ ଛେଳିଟା ନେଇ ତୁମେ ଯିବ କୁଆଡ଼େ ? ଆମ ଗାଁ ମୁଖିଆଙ୍କର

କାଲି ରାତିରେ ଗୋଟିଏ ଛେଳି ଚୋରି ହୋଇଯାଇଛି । ସେ ଏତେକ୍ଷଣରେ ଲୋକ ପଠାଇ ଛେଳିଟା ଖୋଜୁଛନ୍ତି । ମୁଁ ଯାହା ଦେଖୁଛି ତୁମେ ନିଶ୍ଚୟ ତାଙ୍କ ଲୋକ ହାତରେ ପଡ଼ିଯିବ୍ । ଆଉ ନିଜ ଘରକୁ ନଯାଇ ସିଧା ଯଳାଙ୍କ ମାମୁଘରକୁ ଯିବ ।" ବୁଧିଆର ବୁଦ୍ଧି ହଜିଗଲା । ସେ କାକୁତିମିନତି ହୋଇ କହିଲା, "ଭାଇ, ଏ ବିପଦରୁ ମୋତେ ଉଦ୍ଧାର କର । ମୋ ଛେଳିଟା ତୁମେ ନେଇ ତୁମ କୁକୁଡ଼ାଟି ମୋତେ ଦିଅ । ତୁମେ ତ ଏ ଇଲାକାର ଜଣାଶୁଣା ଲୋକ, ଏ ଛେଳିଟା ନେଲେ କିଏ କାହିଁକି ତୁମକୁ ସନ୍ଦେହ କରିବ ?" କୁକୁଡ଼ାବାଲା କହିଲା, "ମୋର ଏ ଅଡ଼ୁଆରେ ପଶିବାକୁ ଜମା ମନନାହିଁ, ଖାଲି ତୁମେ ଅସମୟରେ ପଡ଼ିଛ ବୋଲି ତୁମ କଥାରେ ରାଜି ହେଉଛି ।"

ସେଇ କଥା ହେଲା । କୁକୁଡ଼ାବାଲା ବୁଧିଆକୁ ନିଜ କୁକୁଡ଼ାଟା ବତାଇଦେଇ ବୁଧିଆ ଛେଳିଟା ଧରି ବାଟଭାଙ୍ଗି ଚାଲିଗଲା । ବୁଧିଆ ମନେ ମନେ କହିଲା, "ଓହୋ, ବୁଦ୍ଧି ଥିବାରୁ ସିନା ମୁଁ ରକ୍ଷା ପାଇଗଲି ! ଆଉ ବି ଏ କୁକୁଡ଼ାଟା ମନ୍ଦ କ'ଣ ? ମା' ଯାକୁ କାଟିକୁଟି ଏମିତି ରାନ୍ଧିଦେବ ଯେ ଖାଇବା ଥାଳରୁ ଆଉ ଉଠିବାକୁ ମନ ହେବନାହିଁ । ତା'ଛଡ଼ା ଯା' ପରଗୁଡ଼ାକ କ'ଣ ଅକାରଣ ହୋଇଯିବ ? ସେତକ ତକିଆ ଭିତରେ ଭର୍ତ୍ତି କରିଦେଲେ ମୁଣ୍ଡକୁ ଏମିତି ନରମ ଲାଗିବ ଯେ ଶୋଇଲେ ପଡ଼ୁ ପଡ଼ୁ ନିଦ ଲାଗିଯିବ । ଏତେ ବାଟ ଚାଲି ଚାଲି ଘରେ ପହଞ୍ଚି ଏତେଦିନକେ ଶାନ୍ତିରେ ଟିକିଏ ଖାଇବି ଆଉ ଶୋଇବି ।"

ଏମିତି ଭାବି ଭାବି ଯାଉଯାଉ ବୁଧିଆ ଗୋଟିଏ ଗାଁମୁଣ୍ଡରେ ପହଞ୍ଚିଲା । ଦେଖିଲା ଗୋଟିଏ ଗଛମୂଳେ ଛୁରିକଣ୍ଟାରେ ଧାର କରୁଥିବା ଲୋକଟିଏ ତା' କାମ କରୁଛି, ଗୀତ ଗାଉଛି । ହାଲିଆ ମାରିବାକୁ ବୁଧିଆ ଟିକିଏ ସେ-ଗଛମୂଳେ ବସିପଡ଼ିଲା । ସେ ଲୋକଟାକୁ କହିଲା, "ଭାଇ, ତୁମେ ତ ଭାରି ଖୁସି ଜଣାପଡ଼ୁଛ । ଏ କାମଟା ତୁମକୁ ଖୁବ୍ ଭଲଲାଗୁଛି, ନା ?" ଲୋକଟା ଉତ୍ତର ଦେଲା, "ନିଶ୍ଚୟ ଏ କାମପରି କାମ ଅଛି ? ଯେ ଭଲ ଶାଣ ଦେଇ ଜାଣେ ତା'ର ପକେଟ୍ କେବେ ଖାଲି ନଥାଏ । ଯେତେବେଳେ ପକେଟ୍‌ରେ ହାତପୂରାଇବ ପଇସା ବାହାରିବ । ହଁ, ଏ ଢଉଲଢାଉଲ କୁକୁଡ଼ାଟି କେଉଁଠୁ ପାଇଲ ଭାଇ ?"

ବୁଧିଆ ତାକୁ ମୂଳରୁ ଶେଷଯାଏଁ ନିଜର ସବୁକଥା କହିଗଲା । ଲୋକଟା ତା' କାମଟା ଟିକିଏ ବନ୍ଦ କରିଦେଇ କହିଲା, "ଧନ୍ୟ ତୁମର ବୁଦ୍ଧି ! ହେଲେ ଦିନଟେ ସିନା କୁକୁଡ଼ାମାଂସ ଖାଇବ, ଘରଦ୍ୱାର କଲେ ସଂସାର ଚଳାଇବାକୁ କଞ୍ଚାପଇସା କୁଆଡ଼ୁ ଯାଇବ ? ମୋତେ ଦେଖ, ମଜାରେ କାମ କରୁଛି, ମଜାରେ ଖାଇପିଇ ପିଲାକବିଲାଙ୍କୁ ଖୁଆଇ-ପିଆଇ ଦିନ କାଟୁଛି । ଦାନ ଧର୍ମ କରିବାକୁ ମଧ୍ୟ ମୋର ଦି'ପଇସା ବଳୁଛି । ଦିନେ କାହାର ଖଟଣି କରୁନାହିଁ କି ହାତପତାଇ କାହାକୁ ପଇସାଟିଏ ମାଗୁନାହିଁ ।"

ବୁଧିଆ ମନେ ମନେ ଭାବିଲା, "ସତେ ତ ! ମୁଁ ଯେବେ ଏମିତି କାମଟେ କରନ୍ତି ମୋର କଷ୍ଟ ଅଭାବ ରହନ୍ତା ନାହିଁ । ଦଶବର୍ଷ ମାଲିକ ଆଖରେ ଗଧପରି ଖଟିଲି, ହେଲେ ଏବେ ମୁଁ ଫକଡ଼ ।" ସେ ପାଟିଫିଟାଇ ଲୋକଟାକୁ କହିଲା, "ଆଚ୍ଛା ଭାଇ, ଶାଣଦିଆ ଶିଖିବାକୁ ମୋତେ କ'ଣ କରିବାକୁ ପଡ଼ିବ ?"

ଲୋକଟା ହସିହସି କହିଲା, "ଖାଲି ତୁମର ଶାଣପଥର ଖଣ୍ଡେ ଲୋଡ଼ା । ଆଉ ସବୁ ଆପେ ଆପେ ହୋଇଯିବ । ହେଇଟି ମୋ ପାଖରେ ପୁରୁଣା ପଥରଟିଏ ଅଛି । ବେଶ୍ କାମ ଦେବ । ଏଇଟା ପାଇଁ ମୁଁ ତୁମ କୁକୁଡ଼ା ଦାମ୍‌ଠାରୁ ବେଶି ମାଗିବି ନାହିଁ । କ'ଣ କିଣିବ ?"

"ସେ କଥା ପଚାରୁଛ ? ପକେଟ୍‌ରେ ହାତପୂରାଇବା ମାତ୍ରେ ଯଦି ପଇସା ବାହାରୁଥିବ ମୋର ଆଉ କ'ଣ ଦରକାର ? ହେଇଟି ମୋ କୁକୁଡ଼ାଟା ନିଅ, ତୁମ ପଥରଟି ଦିଅ ।"

ପାଖରେ ପଡ଼ିଥିବା ସାଧାରଣ ପଥର ଖଣ୍ଡେ ଗୋଟାଇ ଲୋକଟା ବୁଧିଆକୁ ଦେଲା । ତାକୁ କହିଲା, "ଏଇଟା ଗୋଟାଏ ଚମତ୍କାର ଶାଣ-ପଥର । ଠିକ୍ ବ୍ୟବହାର କରିଜାଣିଲେ ଯେମିତି ମାଖୁନା ଲୁହା ହୋଇଥିଲେ ବି ଧାରୁଆ ହୋଇଯିବ । ଏଣିକି ତୁମର ଭାଗ୍ୟ ।"

ବୁଧିଆ ପଥରଟାକୁ କାନ୍ଧେଇ ହାଲୁକା ମନରେ ଚାଲିଗଲା । ମନେ ମନେ ଭାବୁଥାଏ—"ବଡ଼ ଶୁଭବେଳାରେ ମୋର ଜନ୍ମ ହୋଇଥିଲା । ନହେଲେ ମୁଁ ଯେଉଁ ମୁହୂର୍ତ୍ତରେ ଯାହା ଚାହୁଁଛି ମିଳିଯାଉଥା'ନ୍ତା !"

ଭୋରରୁ ଉଠି ଏତେବାଟ ଚାଲି ଚାଲି ବୁଧିଆ ବଡ଼ ହାଲିଆ ହୋଇଯାଇଥିଲା । ସେଥିରେ ପୁଣି ପଥରଟାର ଭାର ବୋହିଛି । ଆଉ ଆଗକୁ ଯାଇପାରିଲା ନାହିଁ । ପାଣି ଟିକିଏ ପିଇ ଘଡ଼ିଏ ଥକାମାରିବ ଭାବି ସେ ବାଟକଡ଼ର ଗୋଟିଏ ପୋଖରୀକୂଳରେ ପହଞ୍ଚିଲା ।

ପଥରଟାକୁ କୂଳରେ ଥୋଇ ପାଣିରେ ପଶିବାକୁ ଯାଉଛି ଅଜାଣତରେ ତା' ଗୋଡ଼ବାଜି ସେଇଟା ଗଡ଼ିଗଲା ଓ ଗହୀର ପାଣିରେ ବୁଡ଼ିଗଲା । ବୁଧିଆ ଥକାହୋଇ ପାଣିକୁ ଟିକିଏ ଚାହିଁଲା । ପରମୁହୂର୍ତ୍ତରେ କଣ ଭାବିଲା କେଜାଣି ଅପୂର୍ବ ଆନନ୍ଦରେ ନାଚି ଉଠିଲା । ଆଖିରୁ ଦୁଇଧାର ଲୁହଗଡ଼ାଇ କହିଲା, "ହେ ଭଗବାନ୍, ତୁମେ ଯାହା କରୁଛ ପ୍ରାଣୀର ମଙ୍ଗଳ ପାଇଁ । ସେ ଅକାମୀ ପଥରଟା ମୋର ଶେଷ ଚିନ୍ତା ଥିଲା । ସେଇଟାକୁ ନେଇଯାଇ ମୋତେ ରକ୍ଷା କରିଦେଲ । ମୋତେ ଚିନ୍ତାରେ ପକାଇବାକୁ ଆଉ କିଛି ନାହିଁ । ମୋ ପରି ସୁଖୀ ସଂସାରରେ କିଏ ଅଛି ? ତୁମକୁ କୋଟି କୋଟି ନମସ୍କାର, ପ୍ରଭୁ !"

ଘର ଆଉ ଅଳ୍ପବାଟ ଥିଲା । ପୋଖରୀରୁ ପାଣିମୁନ୍ଦାଏ ପିଇ ସେ ହସହସ ମୁହଁରେ ଘରେ ଯାଇ ପହଞ୍ଚିଲା ।



# ଓଲକୋବି ରହସ୍ୟ



ଗୋଟିଏ ଗାଁରେ ଦୁଇ ଭାଇ ଅଲଗା ହୋଇ ରହୁଥା'ନ୍ତି । ବଡ଼ଭାଇ ନାନା ଖଞ୍ଜାରେ ବେଶ୍ ଦୁଇପଇସା କମାଇ ବଡ଼ଲୋକ ହୋଇଯାଇଥାଏ । ସାନଭାଇ ଛୋଟିଆ ଚାକିରିଟିଏ କରି ଟାଣଟଣରେ ତା' ସଂସାର ଚଳାଉଥାଏ । ଦିନେ ସେ ବିଚାରିଲା, "କେତେ ଦିନ ଆଉ ଏ ହୀନିମାନିଆ ଅବସ୍ଥାରେ ପଡ଼ିରହିଥିବି ? ଏଥର କିଛି ଗୋଟାଏ କରିବାକୁ ପଡ଼ିବ ।"

ଚନ୍ଦ୍ରିଆରଦ୍ଦନ ସେ ଧୋବଧାଉଳିଆ ପୋଷାକ ଓହ୍ଲାଇଦେଇ କୋଡ଼, ତାଙ୍କ ଧର ବଗିଚ୍ଛକୁ ବାହାରିପଡ଼ିଲା । ମାଳୀ ସାଜ ମାଟି ଖୋଳିଲା । ଆଉ ଓଲକୋବ ବୃଷଗୁଡ଼ିଏ କିଣିଆଣି ବଗିଚ୍ଛରେ ଲଗାଇ-ଦେଲା । ତା' ପରେ ବୃଷଗୁଡ଼ିକ ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେଥିରେ ଫଳ ଧରିଲା । କି ଆଶ୍ଚର୍ଯ୍ୟ ! ତା' ଭିତରୁ ଗୋଟାଏ ଓଲକୋବ ଖାଲି ବଢ଼ି ବଢ଼ି ଚାଲିଲା । ଦେଖି ଦେଖୁ ଏମିତି ପ୍ରକାଣ୍ଡ ଓଲକୋବଟାଏ ହୋଇଗଲା ଯେ କେଉଁ କାଳେ କେହି ଦେଖିନଥିବେ ।

ମାଳୀ ବାପୁଡ଼ାର ମନକୁ ପାପ ଛୁଇଁଲା । ଏ ଅଘଟଣ ଫଳଟା କିଛି ଗୋଟାଏ ଅଘଟନ ଘଟାଇବ ନାହିଁ ତ ? ସେ ଓଲକୋବଟା ଉପାଡ଼ିପକାଇ ବଡ଼ କଷ୍ଟରେ ଶଗଡ଼ରେ ଲଦିଲା । ଦେଖିଲା ଶଗଡ଼ଟା ପୂରା ବୋଝେଇ ହୋଇଯାଇଛି । ଦୁଇଟା ତଗଡ଼ା ବଳଦ ବି ତାକୁ ସହଜରେ ଟାଣିପାରିବେନି । ଏଇଟା ହାଟକୁ ନେଇ କି ଲାଭ ? ସାନ ସାନ ସୁଆଦିଆ ସୁଆଦିଆ ଓଲକୋବ ନକିଣି କିଏ କାହିଁକି ବେଶି ପଇସାରେ ଏ ଅସୁର ଫଳଟା କିଣିବ ? ଶେଷରେ ତାକୁ ବୁଦ୍ଧି ଟାଏ ଦିଶିଲା । ଏଇଟା ନେଇ ସେ ରାଜାଙ୍କୁ ଭେଟି ଦେବ ।

ବୋଝେଇ ଶଗଡ଼ରେ ବଡ଼ ବଡ଼ ବଳଦ ହଳେ ଯୋଚି ସେ ରାଜାଙ୍କ ନଅର ଆଡ଼କୁ ଶଗଡ଼ ଚଳାଇଲା । ରାସ୍ତାକଡ଼ରେ ଲୋକେ ଜମାହୋଇ ଏ ଅପୂର୍ବ ଜିନିଷଟାକୁ ଆଁ କରି ଚାହିଁରହିଲେ ।

ରାଜା ଓଲକୋବଟା ଦେଖି କହିଲେ, "ଆରେ, କି ଅଜବ ଜିନିଷଟାଏ । ମୁଁ କେତେ କେତେ ବିଚିତ୍ର ଜିନିଷ ଦେଖିଛି, ଏମିତିକା ପଦାର୍ଥ ତ କେବେ ଦେଖିନ ! ଏ ମଞ୍ଜି ତୁମେ କେଉଁଠୁ ପାଇଲ ? ତୁମେ ନିଶ୍ଚୟ ବଡ଼ ଭାଗ୍ୟବାନ୍ ।" ମାଳୀ ହାତଯୋଡ଼ି କହିଲା, "ନାହିଁ ପ୍ରଭୁ, ମୋ ଭାଗ୍ୟଟା ବଡ଼ ଖରାପ । ବଡ଼ କଷ୍ଟରେ ମୁଁ କୁଟୁମ୍ବ ପୋଷେ । ନିଜ ହାତରେ ମାଟି ହାଣି ହାଟରୁ ବୃଷ ଆଣି ମୋ ବାଡ଼ିରେ ଲଗାଇଥିଲି । ମୋ ଭାଇ ସିନା ଭାଗ୍ୟବଳରେ ଅକଳନ ସମ୍ପତ୍ତିର ମାଲିକ ହୋଇ

ସ୍ୱାମୀଙ୍କର ପ୍ରିୟପାତ୍ର ହୋଇଛନ୍ତି, ମୋ ପରି ଅଭାଗୀକୁ କିଏ କାହିଁକି ପଚାରିବ ?

ମାଳୀ ଉପରେ ରାଜାଙ୍କର କୃପାଦୃଷ୍ଟି ପଡ଼ିଲା । "ଚିନ୍ତା କରନାହିଁ, ମୁଁ ତୁମକୁ ତୁମ ଭାଇଠାରୁ ଆହୁରି ବଡ଼ଲୋକ କରିଦେବି ।" ଏହା କହି ରାଜା ମାଳୀକୁ ସୁନାରୁପା, ଗାଈଗୋରୁ ଆଦି ଅନେକ ଜିନିଷ ଉପହାର ଦେଲେ ।

ଗୋଟାଏ ଓଲକୋବି କେମିତି ସାନଭାଇର ଭାଗ୍ୟ ବଦଳାଇ ଦେଲା, ବଡ଼ଭାଇ ଦେଖିଲା । ତା' ମନରେ ଭାରି ଈର୍ଷା ହେଲା । ସେ ଗୋଟିଏ ବୁଦ୍ଧି ପାଞ୍ଚିଲା । କୌଶଳ କରି ସେ ରାଜାଙ୍କୁ ଅନେକ ପ୍ରକାର ମୂଲ୍ୟବାନ୍ ଜିନିଷ ଓ କେତୋଟି ଜାତିଆ ଘୋଡ଼ା ଭେଟି ଦେବ । ତା' ଭାଇ ଯେବେ ଗୋଟିଏ ଓଲକୋବିଟାଏ ଦେଇ ଏତେ ଧନଦୌଲତ ପାଇଗଲା, ତା'ର ବହୁମୂଲ୍ୟ ଭେଟି ବଦଳରେ ରାଜା କ'ଣ ତାକୁ ଖାଲି-ହାତରେ ବିଦାୟ କରିଦେବେ ?

ରାଜା ବଡ଼ ଆଦରରେ ବଡ଼ଭାଇର ଭେଟି ଗ୍ରହଣକଲେ । କହିଲେ, "ଏ ଅଦ୍ଭୁତ ଓଲକୋବିଟାଠାରୁ ଅଧିକ ମୂଲ୍ୟବାନ୍ ଜିନିଷ କ'ଣ ଅଛି ଯେ ମୁଁ ତୁମକୁ ଉପହାର ଦେବି ?" ସେ ତାଙ୍କ ସିପାହୀମାନଙ୍କ ହାତରେ ଓଲକୋବିଟାକୁ ଶଗଡ଼ରେ ଲଦିଦେଇ ବଡ଼ଭାଇ ଘରକୁ ପଠାଇଦେଲେ ।

ବଡ଼ଭାଇ ଦେହରେ ନିଆଁ ଲାଗିଗଲା । ସେ ଆଜି କାହା ଉପରେ ଦାଉ ସାଧିବ ? ସାନଭାଇଟାକୁ ଖତମ୍ କରିଦେଲେ କଣ୍ଟା ଯିବ । କେତେଜଣ ଭଡ଼ାଟିଆ ଗୁଣ୍ଡାଙ୍କୁ ଡାକି ସେ ତା' ମନର କଥା କହିଲା । ଲୁଚି ରହିବାକୁ ନିର୍ଜ୍ଜନ ସ୍ଥାନଟିଏ ସେମାନଙ୍କୁ ଦେଖାଇଦେଇ ସେ ସାନଭାଇ ପାଖକୁ ଗଲା । ତାକୁ ଗୁପ୍ତ କଥାଟିଏ କହିଲାପରି କହିଲା, "ଭାଇ, କିଛି ଗୋପନ ଧନର ଖବର ମୁଁ ପାଇଛି । ଚାଲ ଆମେ ଦୁହେଁ

ଯାଇ ତାକୁ ଖୋଲି ବାହାରକରିବା ଆଉ ଜୁଏ ଅଧା ବାଣ୍ଟିକରି ଆଣିବା ।”

ସାନଭାଇ ବଡ଼ଭାଇର ଫିସାଦ ବୁଝି ନପାରି ତାଙ୍କ ସଙ୍ଗେ ଗଲା । ଯେଉଁ ନଗ୍ଣୁଟିଆ ସ୍ଥାନରେ ସେମାନେ ପହଞ୍ଚିବାମାତ୍ରେ ଗୁଣ୍ଡାଗୁଡ଼ାକ ଲୁଚିରହିଥିବା ସ୍ଥାନରୁ ବାହାରିପଡ଼େ ସାନଭାଇର ହାତଗୋଡ଼ ବାନ୍ଧିପକାଇଲେ । ତାକୁ ଗଛଡାଳରେ ଝୁଲାଇଦେବାକୁ ଯାଉଛନ୍ତି, ଏତିକିବେଳେ ଘୋଡ଼ାଟାପୁ ଶବ୍ଦ ଶୁଣାଗଲା । ଗୁଣ୍ଡାଗୁଡ଼ାକ ଛନଥା ହୋଇ ତରବରରେ ସାନଭାଇକୁ ଅଖାଟିଏ ଭିତରେ ପୂରାଇଦେଇ ଗଛ ଡାଳରେ ଝୁଲାଇଦେଲେ ଓ ଚମ୍ପଟ କଲେ ।

ସାନଭାଇ ତାଙ୍କ ମୁଣ୍ଡ ପାଖରେ ଥିବା ଅଖାର କଣିଟାକୁ ମେଲାଇ ଦେଇ ଯେମିତିକି ମୁଣ୍ଡଟା ବାହାର କରିଦେଲା । ଘୋଡ଼ାଟାପୁର ଶବ୍ଦ ପାଖେଇ ଆସିଲା । ସାନଭାଇ ଦେଖିଲା ଘୋଡ଼ାସବାର ଜଣେ ପାଠପଢ଼ୁଆ ଯୁବକ ପରି ଜଣାଯାଉଛି । ସେ ଯେମିତି ଗଛମୂଳେ ପହଞ୍ଚିଛି, ସାନଭାଇ ପାଟିକଲା, “ଟିକିଏ ରହିଯାଅ ବାବୁ, ମୋ କଥା ଟିକିଏ ଶୁଣିଯାଅ ।”

ଯୁବକଟି ଘୋଡ଼ାର ଲଗାମ ଟାଣି ଓହ୍ଲାଇ ପଡ଼ିଲା । କେଉଁଠୁ କେତେ ଆସୁଛି ହଠାତ୍ ଜାଣିନପାରି ବଡ଼ପାଟିରେ କହିଲା, “କିଏ ? କିଏ ମୋତେ ଡାକୁଛ ?” ସାନଭାଇ ପାଟିକରି କହିଲା, “ମୁଣ୍ଡଟିକୁ ଉପରକୁ ଚାହଁ । ଆଶ୍ଚର୍ଯ୍ୟ ହୁଅନାହଁ । ଶୁଣ, ମୁଁ ଏ ଜ୍ଞାନମୁଣି ଭିତରେ ଅଳ୍ପ ସମୟ ରହି ବହୁତ ଅଦ୍ଭୁତ କଥା ଶିଖିଗଲିଣି । ମୋର ଏ ମୁଣିଟା ଆଗରେ ତୁମ ପାଠଶାଳାଗୁଡ଼ାକ କିଛି ନୁହେଁ । ଏଠି ଆଉ ଟିକିଏ ସମୟ ରହିଗଲେ ମୁଁ ଜଗତର ଅନେକ ଅନେକ କଥା ଜାଣିଯିବି । ଯେତେ ପଣ୍ଡିତ ଲୋକ ହେଲେ ବି ମୋ ପଛରେ ପଡ଼ିଯିବେ । ଏଇଠି ରହି ମୁଁ ସୂର୍ଯ୍ୟ, ଚନ୍ଦ୍ର, ତାରା ସମସ୍ତଙ୍କର ଗତି ଦେଖିପାରୁଛି । କି ଶକ୍ତି ବଳରେ ପବନ ବହୁଛି, ଜୀବଜନ୍ତୁ ଆତଯାତ ହେଉଛନ୍ତି, ସମୁଦ୍ରରେ କେତେ ବାଲି, କେତେ ପାଣି ଅଛି, ଆଗକୁ କେଉଁକେଉଁବେଳକୁ କ'ଣ ହେବ, କି ରୋଗକୁ କି ଔଷଧ ଲୋଡ଼ା, ଏ

ଜ୍ଞାନମୁଣି ମୋତେ ସବୁ କହିଦେଉଛି । ଲୋକ ଥରେମାତ୍ର ଏହା ଭିତରେ ପଶିଗଲେ ସଂସାରର ସମସ୍ତ ଜ୍ଞାନଭଣ୍ଡାର ତା' ଆଗରେ ଖୋଲିଯିବ ।"

ଯୁବକଟି ଥକ୍କା ହୋଇ ସବୁ ଶୁଣିଲା । ଶେଷରେ ଉଚ୍ଚାଟ ହୋଇ କହିଲା, "ଆଜି ବଡ଼ ଶୁଭ ମୁହୂର୍ତ୍ତରେ ମୁଁ ଘରୁ ବାହାରିଥିଲି । ମୋର ସୁକୃତ ଥିବାରୁ ସିନା ଆଜି ଆପଣଙ୍କ ପରି ମହାପୁରୁଷଙ୍କ ଦେଖାପାଇଲି ! ମହାଶୟ, ମୋର ଗୋଟିଏ ଶ୍ରେଷ୍ଠ ପ୍ରାର୍ଥନା ରଖନ୍ତୁ । ଅଳ୍ପକ୍ଷଣ ପାଇଁ ସେ ମୁଣି ଭିତରେ ପଶିବାକୁ ମୋତେ ସୁଯୋଗ ଦିଅନ୍ତୁ ।"

ସାନଭାଇ ନିହାତି ଅମଙ୍ଗ ହେଲାପରି କହିଲା, "ନା ନା, ତାହା ହୋଇପାରିବ ନାହିଁ । ତୁମ ପାଇଁ ମୁଁ ଏ ସୁଯୋଗ ହରାଇବି କାହିଁକି ?" ଯୁବକ ହାତଯୋଡ଼ି ନତମସ୍ତକ ହୋଇ କହିଲା, "ହେ ମହାତ୍ମା, ମୋତେ ଟିକିଏ ଦୟା କରନ୍ତୁ; ନହେଲେ ନଖାଇ ନପିଇ ଏଇ ଗଛମୂଳେ ମୁଁ ଜୀବନ ହାରିଦେବି ।"

ସାନଭାଇ ଟିକିଏ ତରଳିଗଲା ପରି କହିଲା, "ଟିକିଏ ଥୟ ଧର, ମୁଁ ଆଉ କିଛିକାଳ ଜ୍ଞାନମୁଣି ଭିତରେ ରହି ମୋର ବାକି ଯାହା ଶିଖିବାକୁ ଅଛି ଶିଖିସାରେ, ତେବେ ଯାଇ ତୁମକୁ କ୍ଷଣେ ପାଇଁ ମୁଣିଟା ଛାଡ଼ିଦେବି ।" ମାତ୍ର ଯୁବକ ଆଉ ଥୟ ଧରିପାରିଲା ନାହିଁ । ଆତୁର ଆର୍ତ୍ତସ୍ୱରରେ କହିଲା, ଜ୍ଞାନଲାଭ ପାଇଁ ମୋ ମନ ବଡ଼ ଉଚ୍ଚାଟ ହେଲାଣି । ମୋତେ ଗଛ ଉପରକୁ ଉଠିବାକୁ ଅନୁମତି ଦିଅନ୍ତୁ ।"

ସାନଭାଇ ଟିକିଏ ଗମ୍ଭୀର ସ୍ୱରରେ କହିଲା, "ଆଚ୍ଛା, ତୁମେ ଗଛ ଉପରେ ଚଢ଼ିବା ଦରକାର ନାହିଁ । ଖାଲି ଦଉଡ଼ିର ଗଣ୍ଠିଟା ଟିକେ ଖୋଲିଦେଇ ଜ୍ଞାନମୁଣିଟା ଆସ୍ତେ ଖସାଇଦିଅ ।" ତା' କଥା ନସରୁଣୁ ଯୁବକ ଗଣ୍ଠିଫିଟାଇ ଅଖାଟାକୁ ତଳକୁ ଖସାଇ ଆଣିଲା । ଅବିଳମ୍ବେ ଅଖାର ମୁହଁ ଖୋଲିଦେଇ ସାନଭାଇକୁ ତା' ଭିତରୁ ବାହାର କରିଦେଲା । ଗୋଡ ଗଳାଇ ନିଜେ ତା' ଭିତରେ ପଶିଲା ବେଳକୁ ସାନଭାଇ ପାଟିକଲା, "ହାଁ ହାଁ, ସେମିତି ନୁହେଁ ।" ସେ ଯୁବକର ମୁଣ୍ଡଆଡ଼ୁ

ଅଖାଟା ତା’ ଦେହରେ ଗଳାଇଦେଇ ଗୋଡ଼ପାଖ ଉପରକୁ କରି ଅଖାମୁହଁଟା ଦଉଡ଼ରେ ବାନ୍ଧି ପକାଇଲି ଓ ଦଉଡ଼ର ଆରମୁଣ୍ଡଟା ଟାଣି-ଦେବାରୁ ଅଖାଟା ଗଛ ଉପରକୁ ଉଠିଗଲା । ଦଉଡ଼ଟା ଗଛର ଗଣ୍ଡିରେ ଶକ୍ତ କରି ବାନ୍ଧିସାରି ସେ ଉପରକୁ ଚାହିଁ କହିଲା, “କ’ଣ ବାବୁ, ଏଥର ହେଲା ତ ? ତୁମ ଭିତରେ ନୂଆ ଜ୍ଞାନଗୁଡ଼ାକ ଖଦ୍‌ଖାଦ୍ ହୋଇ ପଶୁଥିଲା ପରି ଲାଗୁଥିବ ନିଶ୍ଚୟ । ଆଚ୍ଛା, ତୁମର ଯେତେ ଇଚ୍ଛା ସେତେ ଜ୍ଞାନ ପାଇବାଯାଏଁ ସେମିତି ଝୁଲୁଥାଅ ।”

ଏତିକ କହି ସାନଭାଇ ଯୁବକର ଘୋଡ଼ା ଉପରକୁ ଡେଇଁପଡ଼ି ତାକୁ ଚାବୁକଟେ ମାରି ଛୁଟିଲା ।

